# ହିତୋପଦେଶ

( ପ୍ରଥମ ଖଣ୍ଡ : ମିତ୍ରଲାଭ )

[ ମୂଳ ସଂସ୍କୃତ ଶ୍ଳୋକ ସହ ଅନୂଦିତ ]

ଅନୁବାଦକ :

ଅଧ୍ୟାପକ ଶ୍ରୀଧର ଦାସ



ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

**ଗ୍ରନ୍ଥ ମନ୍ଦିର**

କଟକ-୨ : ବ୍ରହ୍ମପୁର

ମୁଦ୍ରାକର :

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାଶ

**ଅନ୍ନଦା ପ୍ରେସ**

ତୁଳସୀପୁର : କଟକ-

ପ୍ରଥମ ମୁଦ୍ରଣ

ନଭେମ୍ବର, ୧୯୭୧

ମୂଲ୍ୟ ଟ : ୧.୫୦

# ହିତୋପଦେଶ

## ପ୍ରଥମ ଭାଗ

## ମିତ୍ରଲାଭ

ସିଦ୍ଧିଃ ସାଧ୍ୟେ ସତାମସ୍ତୁ ପ୍ରସାଦାତ୍ତସ୍ୟ ଧୂର୍ଜଟେଃ
ଜାହ୍ନବୀଫେନଲେଖେବ ଯନ୍ମୂର୍ଦ୍ଧ୍ନି ଶଶିନଃ କଳାଃ । ୧ ।

ଯେଉଁ ଦେବଦେବଙ୍କ ଲଲାଟରେ ଚନ୍ଦ୍ରଙ୍କର ଏକ କଳା ଜାହ୍ନବୀର ଫେନରେଖା ସଦୃଶ ସୁଶୋଭିତ, ସେହି ଶିବଙ୍କର ପ୍ରସାଦରୁ ସାଧୁଲୋକମାନଙ୍କର କାର୍ଯ୍ୟରେ ସିଦ୍ଧିଲାଭ ହେଉ । ୧ ।

ହିତୋପଦେଶର ଉପାଦେୟତା—

ଶ୍ରୁତୋ ହିତୋପଦେଶୋଽୟଂ ପାଟବଂ ସଂସ୍କୃତୋକ୍ତିଷୁ
ବାଚାଂ ସର୍ବତ୍ର ବୈଚିତ୍ର୍ୟଂ ନୀତିବିଦ୍ୟାଂ ଦଦାତି ଚ । ୨ ।

ଏହି ହିତୋପଦେଶକୁ ଶ୍ରବଣ କଲେ ସଂସ୍କୃତଭାଷାରେ ପଟୁତା, ବାକ୍ୟ ପ୍ରୟୋଗରେ ବୈଚିତ୍ର୍ୟ ଓ ନୀତିଶିକ୍ଷା ମିଳିଥାଏ । ୨ ।

ବିଦ୍ୟାର ପ୍ରଶସ୍ତି—

ଅଜରାଽମରବତ୍ ପ୍ରାଜ୍ଞୋ ବିଦ୍ୟାମର୍ଥଞ୍ଚ ଚିନ୍ତୟେତ୍
ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍ । ୩ ।

ବୁଦ୍ଧିମାନ ଲୋକ ନିଜକୁ ଅଜର ଓ ଅମର ମନେକରି ବିଦ୍ୟା ତଥା ଧନ ଉପାର୍ଜନ କରିବା ଉଚିତ ଏବଂ ମୃତ୍ୟୁ କେଶକୁ ଧରିଲେଣି ବୋଲି ମନେକରି ଧର୍ମାଚରଣ କରିବା ବିଧେୟ । ୩ ।

ସର୍ବଦ୍ରବ୍ୟେଷୁ ବିଦ୍ୟୈବ ଦ୍ରବ୍ୟମାହୁରନୁତ୍ତମମ୍
ଅହାର୍ଯ୍ୟତ୍ୱାଦନର୍ଘ୍ୟତ୍ୱାଦକ୍ଷୟତ୍ୱାଚ୍ଚ ସର୍ବଦା । ୪ ।

ବିଦ୍ୱାନ୍ ଲୋକେ ସକଳ ପ୍ରକାର ଧନ ମଧ୍ୟରେ ବିଦ୍ୟାକୁ ହିଁ ଶ୍ରେଷ୍ଠ ଧନ ବୋଲି କହିଅଛନ୍ତି, କାରଣ ଏହାକୁ କେହି ଅପହରଣ କରି ନେଇ ପାରେ ନାହିଁ; ଅର୍ଥ ମୂଲ୍ୟରେ ଏହାକୁ କେହି କ୍ରୟ କରି ପାରେ ନାହିଁ । ଏହାକୁ ଦାନ କଲେ ମଧ୍ୟ ଏହାର କ୍ଷୟ ହୁଏ ନାହିଁ । ୪ ।

ସଂଯୋଜୟତି ବିଦ୍ୟୈବ ନୀଚଗାଽପି ନରଂ ସରିତ୍
ସମୁଦ୍ରମିବ ଦୁର୍ଦ୍ଧର୍ଷଂ ନୃପଂ ଭାଗ୍ୟମତଃ ପରମ୍ । ୫ ।

ନିମ୍ନଗାମିନୀ ନଦୀ କ୍ଷୁଦ୍ର କାଷ୍ଠତୃଣାଦି ବହି ନେଇ ଯେପରି ଦୁର୍ଦ୍ଧର୍ଷ ସମୁଦ୍ର ସହିତ ମିଳାଇଥାଏ, ସେହିପରି ବିଦ୍ୟା ନୀଚ-ପ୍ରକୃତିକୁ ମଧ୍ୟ ମହାନ୍ ରାଜାଙ୍କ ସହିତ ମିଳାଇଥାଏ । ଶେଷରେ ସେ ତାର ଭାଗ୍ୟ ଅନୁସାରେ ଫଳଲାଭ କରିଥାଏ । ୫ ।

ବିଦ୍ୟା ଦଦାତି ବିନୟଂ ବିନୟାଦ୍ୟାତି ପାତ୍ରତାମ୍
ପାତ୍ରତ୍ୱାଦ୍ଧନମାପ୍ନୋତି ଧନାଦ୍ଧର୍ମଂ ତତଃ ସୁଖମ୍ । ୬ ।

ବିଦ୍ୟା ଅଧ୍ୟୟନ ଫଳରେ ମନୁଷ୍ୟ ବିନୟୀ ହୁଏ । ବିନୟ[illegible]ରୁ ସେ ସୁପାତ୍ର ବୋଲି ଗଣ୍ୟ ହୁଏ । ସୁପାତ୍ର ହେବାରୁ ସେ ଧନଲାଭ କରେ । ଧନଲାଭ ହେତୁ ସେ ଧର୍ମକାର୍ଯ୍ୟ କରିବାକୁ ସମର୍ଥ ହୁଏ । ଧର୍ମକାର୍ଯ୍ୟ ଦ୍ୱାରା ପୁଣ୍ୟ ଅର୍ଜନ ଫଳରେ ସେ ସୁଖଭୋଗ କରେ । ୬ ।

ବିଦ୍ୟା ଶସ୍ତ୍ରସ୍ୟ ଶାସ୍ତ୍ରସ୍ୟ ଦ୍ୱେ ବିଦ୍ୟେ ପ୍ରତିପତ୍ତୟେ
ଆଦ୍ୟା ହାସ୍ୟାୟ ବୃଦ୍ଧତ୍ୱେ ଦ୍ୱିତୀୟାଽଦ୍ରିୟତେ ସଦା ।୭।

ଶସ୍ତ୍ରବିଦ୍ୟା ଓ ଶାସ୍ତ୍ରବିଦ୍ୟା ଏହି ଦୁଇ ପ୍ରକାର ବିଦ୍ୟା ଇଷ୍ଟସିଦ୍ଧି ନିମିତ୍ତ ପ୍ରସିଦ୍ଧ । ଏ ଦୁଇ ବିଦ୍ୟା ମଧ୍ୟରୁ ଶସ୍ତ୍ରବିଦ୍ୟା ବୃଦ୍ଧ ବୟସରେ ଉପହାସର କାରଣ ହୁଏ; କିନ୍ତୁ ଶାସ୍ତ୍ରବିଦ୍ୟା ସବୁକାଳରେ ପ୍ରଶଂସାର କାରଣ ହୋଇଥାଏ ।୭।

ଯନ୍ନବେ ଭାଜନେ ଲଗ୍ନଃ ସଂସ୍କାରୋ ନାଽନ୍ୟଥା ଭବେତ୍
କଥାଚ୍ଛଲେନ ବାଲାନାଂ ନୀତିସ୍ତଦିହ କଥ୍ୟତେ ।୮।

ନୂତନ ଘଟରେ କୌଣସି ରେଖା ଅଙ୍କିତ ହୋଇଥିଲେ, ତାହା ଘଟ ଭାଙ୍ଗିବା ପର୍ଯ୍ୟନ୍ତ ରହିଥାଏ । ବାଳକମାନଙ୍କ ହୃଦୟ ନୂତନ ଘଟସଦୃଶ । ସେହି ହୃଦୟରେ ଉପଦେଶ ଦ୍ୱାରା ଯେଉଁ ସଂସ୍କାର ଜାତ ହୁଏ, ତାହା ଆଜୀବନ ରହିଥାଏ । ତେଣୁ ଏହି ହିତୋପଦେଶ ଗ୍ରନ୍ଥରେ ଗଳ୍ପ ଛଳରେ ବାଳକମାନଙ୍କୁ ନୀତିଶିକ୍ଷା ଦେବାର ପ୍ରୟାସ କରାଯାଉଅଛି ।୮।

ମିତ୍ରଲାଭଃ ସୁହୃଦ୍‌ଭେଦୋ ବିଗ୍ରହଃ ସନ୍ଧିରେବ ଚ
ପଞ୍ଚତନ୍ତ୍ରାତ୍ ତଥାଽନ୍ୟସ୍ମାଦ୍ ଗ୍ରନ୍ଥାଦାକୃଷ୍ୟ ଲିଖ୍ୟତେ ।୯।

ନୀତି ବିଷୟକ ପଞ୍ଚତନ୍ତ୍ର ତଥା ମହାଭାରତାଦି ଗ୍ରନ୍ଥମାନଙ୍କରୁ ଆହରଣ କରି ବାଳକମାନଙ୍କ ନିମନ୍ତେ ମିତ୍ରଲାଭ, ସୁହୃଦ୍‌ଭେଦ, ବିଗ୍ରହ ଓ ସନ୍ଧି ଏହି ଚାରି ପ୍ରକରଣବିଶିଷ୍ଟ ହିତୋପଦେଶ ନାମକ ଗ୍ରନ୍ଥ ମୁଁ ଲେଖୁଅଛି ।୯।

**କଥାମୁଖ—**

ଭାଗୀରଥୀ ନଦୀତଟରେ ପାଟଳିପୁତ୍ର ନାମକ ଏକ ନଗର ଅଛି । ସେଠାରେ ସକଳ ସ୍ୱାମିଗୁଣସମ୍ପନ୍ନ ଜଣେ ରାଜା ଥିଲେ । ତାଙ୍କର

ନାମ ସୁଦର୍ଶନ । କେହି ଜଣେ ନିମ୍ନଲିଖିତ ଦୁଇଟି ଶ୍ଳୋକ ପାଠ କରୁଥିବା ସମୟରେ ରାଜା ସୁଦର୍ଶନ ତାହା ଶୁଣିପାରିଲେ ।

ଅନେକ ସଂଶୟୋଚ୍ଛେଦି ପରୋକ୍ଷାର୍ଥସ୍ୟ ଦର୍ଶକମ୍
ସର୍ବସ୍ୟ ଲୋଚନଂ ଶାସ୍ତ୍ରଂ ଯସ୍ୟ ନାସ୍ତ୍ୟନ୍ଧଃ ଏବ ସଃ । ୧୦ ।

ଶାସ୍ତ୍ର ଅଶେଷ ସଂଶୟ ଖଣ୍ଡନ କରେ । ମନୁଷ୍ୟର ଚର୍ମଚକ୍ଷୁ ପ୍ରତ୍ୟକ୍ଷ ବସ୍ତୁକୁ ଦେଖାଏ; କିନ୍ତୁ ଶାସ୍ତ୍ର ଦିବ୍ୟ ଚକ୍ଷୁରେ ପରୋକ୍ଷ ବିଷୟକୁ ମଧ୍ୟ ଦେଖାଇ ଦିଏ । ଶାସ୍ତ୍ର ହିଁ ସମସ୍ତଙ୍କର ଚକ୍ଷୁସ୍ୱରୂପ । ଯେ ଶାସ୍ତ୍ର ଅଧ୍ୟୟନ କରି ନାହିଁ ସେ ପ୍ରକୃତରେ ଅନ୍ଧତୁଲ୍ୟ । ୧୦ ।

ଯୌବନଂ ଧନସମ୍ପତ୍ତିଃ ପ୍ରଭୁତ୍ୱମବିବେକତା
ଏକୈକମପ୍ୟନର୍ଥାୟ କିମୁ ଯତ୍ର ଚତୁଷ୍ଟୟମ୍ । ୧୧ ।

ଯୌବନ, ଧନସମ୍ପତ୍ତି, ପ୍ରଭୁତ୍ୱ ଓ ଅବିବେକତା ଏ ଚାରୋଟି ମଧ୍ୟରୁ ପ୍ରତ୍ୟେକ ଗୋଟିଏ ଅନର୍ଥର କାରଣ ଅଟନ୍ତି । ଯେଉଁ ସ୍ଥାନରେ ଏ ଚାରୋଟିଯାକ ବିଦ୍ୟମାନ ସେଠାରେ କଅଣ ନହୋଇ ନ ପାରେ ? ୧୧ ।

ଏହି ଶ୍ଲୋକ ଦୁଇଟି ଶୁଣି ରାଜା ସୁଦର୍ଶନ ଶାସ୍ତ୍ରାଧ୍ୟୟନରେ ପରାଙ୍‌ମୁଖ, ସର୍ବଦା ଶାସ୍ତ୍ର ନିଷିଦ୍ଧ ବ୍ୟବହାରରେ ଲିପ୍ତ, ବିପଥଗାମୀ ପୁତ୍ରମାନଙ୍କ ଆଚରଣରେ ଦୁଃଖିତ ହୋଇ ଚିନ୍ତା କଲେ :

କୋଽର୍ଥଃ ପୁତ୍ରେଣ ଜାତେନ
ଯୋ ନ ବିଦ୍ୱାନ୍ ନ ଧାର୍ମିକଃ
କାଣେନ ଚକ୍ଷୁଷା କିଂବା
ଚକ୍ଷୁପୀଡ଼ୈବ କେବଳମ୍ । ୧୨ ।

ଯେଉଁ ପୁତ୍ର ବିଦ୍ୱାନ୍ ନୁହେଁ କି ଧାର୍ମିକ ନୁହେଁ, ସେପରି ପୁତ୍ର ଜନ୍ମହେବାରେ କି ଫଳ ? ଯେଉଁ ଆଖି ଫୁଟି ଯାଇଥାଏ, ସେ

ଆଖିରେ କି ପ୍ରୟୋଜନ ? ତାହା ଫଳରେ କେବଳ ଚକ୍ଷୁପୀଡ଼ା ହିଁ ସାର ହୋଇଥାଏ । ୧୨ ।

ଅଜାତମୃତମୂର୍ଖାଣାଂ ବରମାଦ୍ୟୌ ନ ଚାନ୍ତିମଃ
ସକୃଦ୍ଦୁଃଖକରାବାଦ୍ୟାବନ୍ତିମସ୍ତୁ ପଦେ ପଦେ । ୧୩ ।

ଆଦୌ ପୁତ୍ର ଜନ୍ମ ନ ହେବା, ଜନ୍ମି ମରିଯିବା ଓ ଆଜୀବନ ମୂର୍ଖ ହେବା ଏ ତିନୋଟି ଅବସ୍ଥା ମଧ୍ୟରୁ ପ୍ରଥମ ଦୁଇଟି ବରଂ ଭଲ, ଶେଷଟି ଆଦୌ ଭଲ ନୁହେଁ । କାରଣ ପୁତ୍ର ନ ହେଲେ ବା ଜନ୍ମି ମରିଗଲେ କ୍ଷଣମାତ୍ର ଦୁଃଖ ହୋଇଥାଏ; କିନ୍ତୁ ଆଜୀବନ ମୂର୍ଖ ପୁତ୍ର ପ୍ରତି ମୁହୂର୍ତ୍ତରେ ଦୁଃଖ ଦେଇଥାଏ । ୧୩ । ପୁଣି—

ବରଂ ଗର୍ଭସ୍ରାବୋ, ବରମପି ଚ ନୈବାଽଭିଗମନଂ
ବରଂ ଜାତଃ ପ୍ରେତୋ ବରମପି ଚ କନ୍ୟାଽବଜନିତା ।
ବରଂ ବନ୍ଧ୍ୟା ଭାର୍ଯ୍ୟା ବରମପି ଚ ଗର୍ଭେଷୁ ବସତି-
ର୍ନ ବାଽବିଦ୍ୱାନ୍ ରୂପଦ୍ରବିଣଗୁଣଯୁକ୍ତୋଽପି ତନୟଃ । ୧୪ ।

ଗର୍ଭପାତ ଶ୍ରେୟସ୍କର, ପତ୍ନୀସହବାସ ନ କରିବା ଶ୍ରେୟସ୍କର, ମୃତ ପୁତ୍ର ଜାତ ହେବା ଶ୍ରେୟସ୍କର, କନ୍ୟା ଜନ୍ମିବା ଶ୍ରେୟସ୍କର, ପତ୍ନୀ ବନ୍ଧ୍ୟା ହେବା ଶ୍ରେୟସ୍କର; କିନ୍ତୁ ରୂପବାନ୍, ଧନବାନ୍ ଅଥଚ ବିଦ୍ୟାଶୂନ୍ୟ ପୁତ୍ର କଦାପି ଶ୍ରେୟସ୍କର ନୁହେଁ । ୧୪ ।

ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିମ୍
ପରିବର୍ତ୍ତିନି ସଂସାରେ ମୃତଃ କୋ ବା ନ ଜାୟତେ । ୧୫ ।

ଯେଉଁ ପୁତ୍ର ଜାତ ହେବାଦ୍ୱାରା କୁଳର ଗୌରବ ବୃଦ୍ଧିପାଏ, ତାହାର ଜନ୍ମ ସାର୍ଥକ । ତାହା ନ ହେଲେ ପରିବର୍ତ୍ତନଶୀଳ ସଂସାରରେ କେତେ ଅବା ମରୁନାହାନ୍ତି, ପୁଣି ମରିବା ପରେ ଜନ୍ମହେଉ ନାହାନ୍ତି । ୧୫ । ପୁଣି—

ଗୁଣିଗଣଗଣନାରମ୍ଭେ ନ ପତତି କଠିନୀ ସସମ୍ଭ୍ରମାଦ୍ ଯସ୍ୟ
ତେନାମ୍ବା ଯଦି ସୁତିନୀ ବଦ ବନ୍ଧ୍ୟା କୀଦୃଶୀ ଭବତି । ୧୬ ।

ଗୁଣୀ ଲୋକମାନଙ୍କ ଗଣନା ବେଳେ ଯାହା ନାମରେ ଖଡ଼ିଗାର ପଡ଼େ ନାହିଁ, ତାହାଯୋଗୁଁ ଯଦି ମାତା ପୁତ୍ରବତୀ ବୋଲାଏ ତେବେ ବନ୍ଧ୍ୟା କାହାକୁ କହିବା । ୧୬ । ପୁଣି—

ଦାନେ ତପସି ଶୌର୍ଯ୍ୟେ ଚ ଯସ୍ୟ ନ ପ୍ରଥିତଂ ମନଃ
ବିଦ୍ୟାୟାମର୍ଥଲାଭେ ଚ ମାତୁରୁଚ୍ଚାର ଏବ ସଃ । ୧୭ ।

ଯେଉଁ ପୁତ୍ରର ହୃଦୟରେ ଦାନ, ତପସ୍ୟା, ଶୌର୍ଯ୍ୟ, ବିଦ୍ୟାଧ୍ୟୟନ ବା ଅର୍ଥୋପାର୍ଜନ ନିମନ୍ତେ ଉତ୍ସାହ ନ ଥାଏ, ସେ ମାତାର ମଳସଦୃଶ ନିରର୍ଥକ । ୧୭ ।

ବରମେକୋ ଗୁଣୀ ପୁତ୍ରୋ ନ ଚ ମୂର୍ଖଶତୈରପି
ଏକଶ୍ଚନ୍ଦ୍ରସ୍ତମୋ ହନ୍ତି ନ ଚ ତାରାଗଣୈରପି । ୧୮ ।

ଗୋଟିଏ ମାତ୍ର ଚନ୍ଦ୍ର ଅନ୍ଧକାରକୁ ନାଶ କରେ; କିନ୍ତୁ ଲକ୍ଷ ଲକ୍ଷ ତାରା ତାହା କରିବାକୁ ଅକ୍ଷମ । ସେହିପରି ଗୋଟିଏ ମାତ୍ର ଗୁଣବାନ୍ ପୁତ୍ର ବରଂ ଭଲ, ଶତ ଶତ ମୂର୍ଖ ପୁତ୍ରରେ କିଛି ଫଳ ନାହିଁ । ୧୮ ।

ପୁଣ୍ୟ ତୀର୍ଥେ କୃତଂ ଯେନ ତପଃ କ୍ୱାପ୍ୟତିଦୁଷ୍କରମ୍
ତସ୍ୟ ପୁତ୍ରୋ ଭବେଦ୍ ବଶ୍ୟଃ ସମୃଦ୍ଧୋ ଧାର୍ମିକଃ ସୁଧୀଃ । ୧୯ ।

ଯେଉଁ ଲୋକ ପୁଣ୍ୟ ତୀର୍ଥରେ କଠୋର ତପସ୍ୟା କରିଥାଏ, ତାହାର ପୁତ୍ର ପିତାର ବଶବର୍ତ୍ତୀ ହୁଏ, ସେ ସମୃଦ୍ଧି ଲାଭକରେ ଓ ବୁଦ୍ଧିମାନ୍ ହୁଏ । ୧୯ । କଥିତ ଅଛି—

ଅର୍ଥାଗମୋ ନିତ୍ୟମରୋଗିତା ଚ
ପ୍ରିୟା ଚ ଭାର୍ଯ୍ୟା ପ୍ରିୟବାଦିନୀ ଚ
ବଶ୍ୟଶ୍ଚ ପୁତ୍ରୋଽର୍ଥକରୀ ଚ ବିଦ୍ୟା
ଷଡ୍ ଜୀବଲୋକେଷୁ ସୁଖାନି ରାଜନ୍ । ୨୦ ।

ହେ ରାଜନ୍, ସଂସାରରେ ଛଅଟି ସୁଖ ଅଛି; ଯଥା—ଧନାଗମ, ସର୍ବଦା ନିରୋଗ ରହିବା, ପ୍ରେମମୟୀ ଓ ପ୍ରିୟଭାଷିଣୀ ଭାର୍ଯ୍ୟା, ଆଜ୍ଞାପାଳନକାରୀ ପୁତ୍ର ଓ ଅର୍ଥକରୀ ବିଦ୍ୟା । ଏହି ଛଅ ପ୍ରକାର ସୁଖଲାଭ କରିପାରିଲେ ମାନବଜୀବନ ସାର୍ଥକ ହୁଏ । ୨୦ ।

କୋ ଧନ୍ୟୋ ବହୁଭିଃ ପୁତ୍ରୈଃ କୁଶୂଳାପୂରଣାଢ଼କୈଃ
ବରମେକଃ କୁଳାଲମ୍ବୀ ଯତ୍ର ବିଶ୍ରୂୟତେ ପିତା । ୨୧ ।

ମୂଲ୍ୟହୀନ ଭୁଷ ପରିପୂର୍ଣ୍ଣ ଆଢ଼କ ( ମାଣ ) ସଦୃଶ ବହୁ ପୁତ୍ର ଲାଭ କରି କିଏ କୃତକୃତ୍ୟ ହୋଇଛି କି ? କିନ୍ତୁ ଯେଉଁ ପୁତ୍ରଯୋଗେ ବଂଶର ମଙ୍ଗଳ ହୁଏ ଓ ପିତା ପ୍ରଶଂସିତ ହୁଏ, ସେହି ପୁତ୍ର ଯଥାର୍ଥ ପୁତ୍ର । ୨୧ ।

ଋଣକର୍ତ୍ତା ପିତା ଶତ୍ରୁର୍ମାତା ଚ ବ୍ୟଭିଚାରିଣୀ
ଭାର୍ଯ୍ୟା ରୂପବତୀ ଶତ୍ରୁଃ ପୁତ୍ରଃ ଶତ୍ରୁରପଣ୍ଡିତଃ । ୨୨ ।

ଋଣ କରିଥିବା ପିତା, ବ୍ୟଭିଚାରିଣୀ ମାତା, ରୂପବତୀ ଭାର୍ଯ୍ୟା ଓ ମୂର୍ଖ ପୁତ୍ର ଶତ୍ରୁ ରୂପେ ପରିଗଣିତ ହୋଇଥାଆନ୍ତି । ୨୨ ।

ଯସ୍ୟ କସ୍ୟ ପ୍ରସୂତୋଽପି ଗୁଣବାନ୍ ପୂଜ୍ୟତେ ନରଃ
ଧନୁର୍ବଂଶ ବିଶୁଦ୍ଧୋଽପି ନିର୍ଗୁଣଃ କିଂ କରିଷ୍ୟତି । ୨୩ ।

ଉତ୍ତମ ବଂଶ (ବାଉଁଶରେ) ନିର୍ମିତ ଧନୁର୍ଦଣ୍ଡ ଗୁଣଯୁକ୍ତ ନ ହେଲେ ଯେପରି ଶରନିକ୍ଷେପ କରିବାକୁ ଅକ୍ଷମ ହୁଏ, ସେହିପରି

ଉତ୍ତମ ବଂଶରେ ଜାତ ହୋଇଥିଲେ ମଧ୍ୟ ଗୁଣହୀନ ଜନ ପୂଜା ପାଏନାହିଁ । ଗୁଣବାନ୍ ଲୋକ ଯେକୌଣସି କୁଳରେ ଜାତ ହୋଇଥିଲେ ହେଁ ପୂଜା ପାଇଥାଏ । ୨୩ ।

ହା ହା ପୁତ୍ରକ ! ନାଽଧୀତଂ ଗତାସ୍ୱେତାସୁ ରାତ୍ରିଷୁ,
ତେନ ତ୍ୱଂ ବିଦୁଷାଂ ମଧ୍ୟେ ପଙ୍କେ ଗୌରିବ ସୀଦସି ।୨୪ ।

ହେ ପୁତ୍ର, ଯେପରି ପଙ୍କରେ ଗୋଡ଼ ପଡ଼ିଥିବା ଗାଈଟିର ଉଠି ଆସିବାକୁ ଶକ୍ତି ନଥାଏ, ସେହିପରି ଏତେଦିନହେଲା ବିଦ୍ୟାଧ୍ୟୟନ କରି ନ ଥିବାରୁ ତୁ ଅଜ୍ଞତା ପଙ୍କରୁ ଉଠି ବିଦ୍ୱାନ୍ ସମାଜକୁ ଆସି ପାରିବୁ ନାହିଁ । ୨୪ ।

ଏଣୁ ବର୍ତ୍ତମାନ କିପରି ମୋର ଏହି ପୁତ୍ରମାନଙ୍କୁ ଗୁଣବନ୍ତ କରିବି ? ଯେ ହେତୁ :—

ଆହାର ନିଦ୍ରାଭୟ ମୈଥୁନଞ୍ଚ
ସମାନମେତତ୍ ପଶୁଭିର୍ନରାଣାମ୍
ଧର୍ମୋ ହି ତେଷାମଧିକୋ ବିଶେଷୋ
ଧର୍ମେଣ ହୀନାଃ ପଶୁଭିଃ ସମାନାଃ । ୨୫ ।

ଆହାର, ନିଦ୍ରା, ଭୟ ଓ ମୈଥୁନ, ଏ ଚାରିଟି ବିଷୟରେ ମନୁଷ୍ୟ ପଶୁ ସହିତ ସମାନ । କେବଳ ଧର୍ମଗୁଣରେ ମନୁଷ୍ୟ ପଶୁଠାରୁ ଶ୍ରେଷ୍ଠ । ଧର୍ମହୀନ ମନୁଷ୍ୟ ଓ ପଶୁ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ୨୫ ।

ଧର୍ମାର୍ଥକାମମୋକ୍ଷାଣାଂ ଯସ୍ୟୈକୋଽପି ନ ବିଦ୍ୟତେ
ଅଜାଗଳସ୍ତନସ୍ୟେବ ତସ୍ୟ ଜନ୍ମ ନିରର୍ଥକମ୍ । ୨୬ ।

ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରିଟି ମଧ୍ୟରୁ ଯାହାର କୌଣସି ଗୋଟିଏ ସୁଦ୍ଧା ନ ଥାଏ, ତାହାର ଜନ୍ମ ଛେଳି ଗଳାରୁ ଓହଳୁଥିବା ସ୍ତନପରି ନିରର୍ଥକ । ୨୬ ।

ଆୟୁଃ କର୍ମ ଚ ବିତ୍ତଞ୍ଚ ବିଦ୍ୟା ନିଧନମେବ ଚ
ପଞ୍ଚୈତାନ୍ୟପି ସୃଜ୍ୟନ୍ତେ ଗର୍ଭସ୍ଥସ୍ୟୈବ ଦେହିନଃ । ୨୭ ।

ଜନ୍ମ ପୂର୍ବରୁ ପ୍ରାଣୀର ଆୟୁ, ଶୁଭାଶୁଭ କର୍ମ, ଧନସମ୍ପତ୍ତି, ବିଦ୍ୟା ଓ ମୃତ୍ୟୁ ଏ ପାଞ୍ଚୋଟିକୁ ବିଧାତା ସୃଷ୍ଟି କରିଥାନ୍ତି । ୨୭ ।
ପୁଣି—

ଅବଶ୍ୟମ୍ଭାବିନୋ ଭାବା ଭବନ୍ତି ମହତାମପି
ନଗ୍ନତ୍ୱଂ ନୀଳକଣ୍ଠସ୍ୟ ମହାହିଶୟନଂ ହରେଃ । ୨୮ ।

ପ୍ରତାପୀ ଓ ବିଭବଶାଳୀ ଲୋକେ ମଧ୍ୟ ସଂସାରରେ ଅବଶ୍ୟମ୍ଭାବୀ ଦୈବର ଅଧୀନ । ଏହି ଦୈବ ବଶରୁ ଦେବାଧିଦେବ ଶିବ ବସ୍ତ୍ରାଭାବରୁ ଉଲଗ୍ନ ହୋଇ ଅଛନ୍ତି; ସ୍ୱୟଂ ବିଷ୍ଣୁ ଶେଷନାଗ ସର୍ପଉପରେ ଶୟନ କରିଅଛନ୍ତି । ୨୮ ।

ଯଦଭାବି ନ ତଦ୍‌ଭାବି ଭାବି ଚେନ୍ନ ତଦନ୍ୟଥା
ଇତି ଚିନ୍ତାବିଷଘ୍ନୋଽୟମଗଦଃ କିଂ ନ ପୀୟତେ । ୨୯ ।

ଯାହା ନ ହେବାର କଥା ତାହା କଦାପି ହେବ ନାହିଁ । ପୁଣି ଯାହା ହେବାକୁ ଥିବ, ତାହା ଅବଶ୍ୟ ଘଟିବ । ଏହି ଜ୍ଞାନକୁ ଉପଲବ୍ଧି କରିବା ଉଚିତ । ଚିନ୍ତାରୂପକ ଗରଳକୁ ବିନାଶ କରିବା ନିମନ୍ତେ ଏହି ଜ୍ଞାନ ଅମୃତସଦୃଶ ଅଟେ । ୨୯ ।

କିନ୍ତୁ ଏହା କାର୍ଯ୍ୟ କରିବାରେ ଆଳସ୍ୟ-ପରାୟଣ କୌଣସି ଲୋକର ଉକ୍ତି—

ଯଥା ହ୍ୟେକେନ ଚକ୍ରେଣ ନ ରଥସ୍ୟ ଗତିର୍ଭବେତ୍
ତଥା ପୁରୁଷକାରେଣ ବିନା ଦୈବଂ ନ ସିଧ୍ୟତି । ୩୦ ।

ଗୋଟିଏ ମାତ୍ର ଚକଦ୍ୱାରା ଯେପରି ରଥର ଗତି ଅସମ୍ଭବ, ସେହିପରି ପୁରୁଷକାର ବିନା ଦୈବ କୌଣସି ଫଳ ଦେବା ଅସମ୍ଭବ । ୩୦ । ପୁଣି—

ପୂର୍ବଜନ୍ମ କୃତଂ କର୍ମ ତଦ୍ ଦୈବମିତି କଥ୍ୟତେ
ତସ୍ମାତ୍ ପୁରୁଷକାରେଣ ଯତ୍ନଂ କୁର୍ଯ୍ୟାଦତନ୍ଦ୍ରିତଃ । ୩୧ ।

ପୂର୍ବଜନ୍ମର ଶୁଭାଶୁଭ କର୍ମକୁ ପଣ୍ଡିତମାନେ ଦୈବ ବା ଭାଗ୍ୟ ବୋଲି କହିଥାନ୍ତି । ତେଣୁ ମନୁଷ୍ୟ ଏ ଜନ୍ମରେ ଆଳସ୍ୟ ତ୍ୟାଗ କରି ପୁରୁଷକାର ବଳରେ କାର୍ଯ୍ୟରେ ନିଯୁକ୍ତ ରହିବା ଉଚିତ । ୩୧ ।

ନ ଦୈବମପି ସଂଚିନ୍ତ୍ୟ ତ୍ୟଜେଦୁଦ୍ୟୋଗମାତ୍ମନଃ
ଅନୁଦ୍ୟୋଗେନ ତୈଳାନି ତିଳେଭ୍ୟୋ ନାପ୍ତୁମର୍ହତି । ୩୨ ।

ଭାଗ୍ୟରୁ ସବୁ ହୁଏ, ପରିଶ୍ରମ କିଛି ନୁହେଁ—ଏପରି ଚିନ୍ତାକରି ଉଦ୍ୟମରୁ ବିରତ ହେବା ଅନୁଚିତ । ତିଳରୁ ତେଲ ବାହାରେ ସତ; କିନ୍ତୁ ଉଦ୍‌ଯୋଗ ନ କଲେ ତିଳରୁ ତେଲ ବାହାରିବା ମଧ୍ୟ ଅସମ୍ଭବ । ୩୨ ।

ଉଦ୍‌ଯୋଗିନଂ ପୁରୁଷସିଂହମୁପୈତି ଲକ୍ଷ୍ମୀ-
ର୍ଦୈବେନ ଦେୟମିତି କାପୁରୁଷାଃ ବଦନ୍ତି ।
ଦୈବଂ ନିହତ୍ୟ କୁରୁ ପୌରୁଷମାତ୍ମଶକ୍ତ୍ୟା
ଯତ୍ନେ କୃତେ ଯଦି ନ ସିଧ୍ୟତି କୋଽତ୍ର ଦୋଷଃ ।୩୩ ।

ଉଦ୍‌ଯୋଗୀ ପୁରୁଷସିଂହକୁ ଲକ୍ଷ୍ମୀ ପ୍ରସନ୍ନ ହୁଅନ୍ତି । କେବଳ କାପୁରୁଷମାନେ କହନ୍ତି, 'ଭାଗ୍ୟରେ ଥିଲେ ମିଳିବ ।' ଭାଗ୍ୟକୁ ଦୂରରେ ରଖି ଯଥାଶକ୍ତି ଉଦ୍ୟମ କର । ଯତ୍ନ କଲେ ସୁଦ୍ଧା ଯଦି

ସିଦ୍ଧିଲାଭ ନ ହୁଏ, ତେବେ ଯତ୍ନ କରିବାରେ କିଛି କ୍ଷତି ଅଛି ବୋଲି ବୁଝିବାକୁ ହେବ । ୩୩ ।

ଯଥା ମୃତ୍ପିଣ୍ଡତଃ କର୍ତ୍ତା କୁରୁତେ ଯଦ୍ ଯଦିଚ୍ଛତି
ଏବମାତ୍ମକୃତଂ କର୍ମ ମାନବଃ ପ୍ରତିପଦ୍ୟତେ । ୩୪ ।

କୁମ୍ଭକାର ମୃତ୍ତିକାପିଣ୍ଡରୁ ଯାହା ଇଚ୍ଛା ତାହା ନିର୍ମାଣ କଲାପରି ମନୁଷ୍ୟ ସ୍ୱକୃତ ଶୁଭାଶୁଭ କର୍ମର ଫଳ ଲାଭ କରେ । ୩୪ । ପୁଣି—

କାକତାଳୀୟବତ୍ ପ୍ରାପ୍ତଂ ଦୃଷ୍ଟ୍ୱାପି ନିଧିମଗ୍ରତଃ
ନ ସ୍ୱୟଂ ଦୈବମାଦତ୍ତେ ପୁରୁଷାର୍ଥମପେକ୍ଷତେ । ୩୫ ।

କାକତାଳୀୟ ନ୍ୟାୟରେ ଦୈବ ଯୋଗରୁ ଉପସ୍ଥିତ ରତ୍ନକୁ ଆଖି ଆଗରେ ଦେଖୁଥିଲେ ମଧ୍ୟ ଦୈବ ତାହାକୁ ଆଣି ହାତରେ ଦେଇ ଯାଏ ନାହିଁ । ସେଥିପାଇଁ ପ୍ରଯତ୍ନ କରିବାକୁ ହୋଇଥାଏ । ୩୫ ।

ଉଦ୍ୟମେନ ହି ସିଧ୍ୟନ୍ତି କାର୍ଯ୍ୟାଣି ନ ମନୋରଥୈଃ
ନ ହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ । ୩୬ ।

କେବଳ ମନସ୍କାମନା ଦ୍ୱାରା କାର୍ଯ୍ୟରେ ସିଦ୍ଧିଲାଭ ହୁଏ ନାହିଁ । ଉଦ୍ୟମ ଦ୍ୱାରାହିଁ ଲାଭ ହୁଏ । ସିଂହ ଶୋଇ ରହିଥିଲେ ମୃଗମାନେ ଆପେ ଆପେ ଆସି ତାହାର ମୁଖରେ ପ୍ରବେଶ କରନ୍ତି ନାହିଁ । ୩୬ । କଥିତ ଅଛି—

ମାତା ଶତ୍ରୁଃ ପିତା ବୈରୀ ଯେନ ବାଲୋ ନ ପାଠିତଃ
ନ ଶୋଭତେ ସଭାମଧ୍ୟେ ହଂସମଧ୍ୟେ ବକୋ ଯଥା । ୩୭ ।

ଯେଉଁ ପିତାମାତା ବାଳକକୁ ଶିକ୍ଷା ଦିଅନ୍ତି ନାହିଁ, ସେମାନେ ତାର ଶତ୍ରୁ । ହଂସଶ୍ରେଣୀ ମଧ୍ୟରେ ବକ ସଦୃଶ ସେହି ବାଳକ ବିଦ୍ୱାନଗୋଷ୍ଠୀରେ ଶୋଭା ପାଏନାହିଁ । ୩୭ ।

ରୂପଯୌବନସମ୍ପନ୍ନା ବିଶାଳକୁଳସମ୍ଭବାଃ
ବିଦ୍ୟାହୀନା ନ ଶୋଭନ୍ତେ ନିର୍ଗନ୍ଧା ଇବ କିଂଶୁକାଃ । ୩୮ ।

ଯେପରି ପଳାଶ ପୁଷ୍ପ ଗନ୍ଧହୀନ ହୋଇଥିବାରୁ ଆଦୃତ ହୁଏ ନାହିଁ, ସେହିପରି ବିଦ୍ୟାହୀନ ବ୍ୟକ୍ତି ରୂପଯୌବନସମ୍ପନ୍ନ ଓ ଉଚ୍ଚ କୁଳରେ ଜାତ ହୋଇଥିଲେ ମଧ୍ୟ ଆଦୃତ ହୁଏ ନାହିଁ ।୩୮। ପୁଣି—

ନ ଚୈକେଷୁ ଚ ନାଽଧୀତଂ ନାଽଧୀତଂ ଗୁରୁସନ୍ନିଧୌ
ନ ଶୋଭତେ ସଭାମଧ୍ୟେ ଜାରଗର୍ଭ ଇବ ସ୍ତ୍ରିୟାଃ । ୩୯ ।

ଯେଉଁ ବାଳକ ନିଜ ଶକ୍ତିରେ ଶାସ୍ତ୍ରାଦି ଅଧ୍ୟୟନ କରି ନ ଥାଏ କିମ୍ବା ଗୁରୁଙ୍କ ନିକଟରେ ତାହା ଶିକ୍ଷା କରି ନ ଥାଏ, ସେ ରମଣୀର ଜାରଜ ସନ୍ତାନ ତୁଲ୍ୟ ଅନାଦୃତ ହୁଏ । ୩୯ ।

ଏହିପରି ଚିନ୍ତା କରି ରାଜା ସୁଦର୍ଶନ ପଣ୍ଡିତସଭା ଡକାଇଲେ । ସେ ପଣ୍ଡିତମାନଙ୍କୁ କହିଲେ, "ହେ ପଣ୍ଡିତବର୍ଗ, ମୋ କଥା ଶୁଣନ୍ତୁ । ଆପଣମାନଙ୍କ ମଧ୍ୟରେ ଏପରି କେହି ପଣ୍ଡିତ ଅଛନ୍ତି କି ଯିଏ ମୋର ଶାସ୍ତ୍ରପରାଙ୍ମୁଖ ବିପଥଗାମୀ ପୁତ୍ରମାନଙ୍କୁ ନୀତିଶାସ୍ତ୍ର ଉପଦେଶ ଦେଇ ସେମାନଙ୍କର ପୁନର୍ଜନ୍ମ କରାଇ ପାରିବେ ? ଯେହେତୁ—

କାଚଃ କାଞ୍ଚନସଂସର୍ଗାଦ୍ ଧତ୍ତେ ମାରକତୀଦ୍ୟୁତୀଃ ।
ତଥା ସତ୍ସନ୍ନିଧାନେନ ମୂର୍ଖୋଯାତି ପ୍ରବୀଣତାମ୍ । ୪୦ ।

କାଚ କାଞ୍ଚନ ସଂସର୍ଗରେ ଆସି ମରକତମଣିର ତେଜ ଧାରଣ କରେ । ସେହିପରି ମୂର୍ଖବ୍ୟକ୍ତି ସାଧୁଲୋକଙ୍କ ସାହଚର୍ଯ୍ୟରେ ଆସି ବ୍ୟବହାର-ନୈପୁଣ୍ୟ ଅର୍ଜନ କରିପାରେ । ୪୦ ।

ହୀୟତେ ହି ମତିସ୍ତାତ, ହୀନୈଃ ସହ ସମାଗମାତ୍
ସମୈଶ୍ଚ ସମତାମେତି ବିଶିଷ୍ଟୈଶ୍ଚ ବିଶିଷ୍ଟତାମ୍ । ୪୧ ।

ହେ ତାତ, ମାତବଳାକର ସହବାସ ଫଳରେ ମନ ମାତ ହୋଇମାଏ; ସମାନ ଗୁଣବଣିଷ୍ଟ ଲୋକର ସାହଚର୍ଯ୍ୟରେ ପୂର୍ବବତ୍ ରହେ; କନ୍ତୁ ବଶିଷ୍ଟ ଲୋକଙ୍କ ସାହଚର୍ଯ୍ୟ ଫଳରେ ମନ ଉତ୍କର୍ଷ ପ୍ରାପ୍ତ ହୁଏ । ୪୧ ।”

ଏହ ସମୟରେ ସକଳ ମାତଶାସ୍ତ୍ରରେ ନପୁଣ, ବୃହସ୍ପତ ସଦୃଶ ବଷ୍ଣୁଶର୍ମାନାମକ ଜଣେ ପଣ୍ଡିତ କହଲେ, “ମହାରାଜ, ଏହ ରାଜପୁତ୍ରମାନେ ମହାନ୍ କୁଳରେ ଜାତ; ତେଣୁ ମୁଁ ସେମାନଙ୍କୁ ମାତଶାସ୍ତ୍ର ଶିକ୍ଷା ଦେଇପାରବ । ଯେହେତୁ—

ନାଽଦ୍ରବ୍ୟେ ନହତା କାଚତ୍ କ୍ରିୟା ଫଳବତୀ ଭବେତ୍
ନ ବ୍ୟାପାରଶତେନାପି ଶୁକବତ୍ ପାଠ୍ୟତେ ବକଃ । ୪୨ ।

ଅପାତ୍ରଠାରେ ଯେତେ ଚେଷ୍ଟା କଲେ ମଧ କୌଣସି ଉଦ୍ୟମ ସଫଳ ହୁଏ ନାହିଁ । ଶତ ଚେଷ୍ଟା କଲେ ସୁଦ୍ଧା ବକ କଦାଚି ଶୁକ-ପର କଥା କହ ପାରବନାହିଁ । ୪୨ । ପୁଣି—

ଅସ୍ମିଂସ୍ତୁ ନର୍ଗୁଣଂ ଗୋତ୍ରେ ନାଽପତ୍ୟମୁପଜାୟତେ
ଆକରେ ପଦ୍ମରାଗାଣାଂ ଜନ୍ମ କାଚମଣେଃ କୁତଃ । ୪୩ ।

ଏପର ମହାନ୍ ବଂଶରେ ଗୁଣହୀନ ସନ୍ତାନ ଜନ୍ମି ନପାରେ । ଯେଉଁ ଖଣିରୁ ପଦ୍ମରାଗ ମଣି ବାହାରେ ସେଥିରୁ କାଚ ବାହାରବ କପର ? । ୪୩ ।

ଅତଏବ ମୁଁ ଛଅମାସ ମଧ୍ୟରେ ଆପଣଙ୍କ ପୁତ୍ରମାନଙ୍କୁ ମାତ-ଶାସ୍ତ୍ରରେ ନପୁଣ କରାଇପାରବ ।”

ରାଜା ବମାତଭାବରେ ପୁନର୍ବାର କହଲେ—

କୀଟୋଽପି ସୁମନଃସଙ୍ଗାଦାରୋହତ ସତାଂ ଶିରଃ
ଅଶ୍ମାଽପି ଯାତ ଦେବତ୍ୱଂ ମହଦ୍‌ଭିଃ ସୁପ୍ରତଷ୍ଠିତଃ । ୪୪ ।

କ୍ଷୁଦ୍ର କୀଟ ମଧ୍ୟ ପୁଷ୍ପସହବାସ ଫଳରେ ଦେବତା, ରାଜା ପ୍ରଭୃତିଙ୍କ ମସ୍ତକରେ ସ୍ଥାନ ପାଏ । ବ୍ରାହ୍ମଣମାନଙ୍କଦ୍ୱାରା ବେଦମନ୍ତ୍ରାଦି ପାଠପୂର୍ବକ ପ୍ରତିଷ୍ଠିତ ହେଲେ ସାମାନ୍ୟ ପଥର ମଧ୍ୟ ଦେବତାରେ ପରିଣତ ହୁଏ । ୪୪ । ପୁଣି—

ଯଥୋଦୟଗିରେର୍ଦ୍ରବ୍ୟଂ ସନ୍ନିକର୍ଷେଣ ଦୀପ୍ୟତେ
ତଥା ସତ୍‌ସନ୍ନିଧାନେନ ହୀନବର୍ଣ୍ଣୋଽପି ଦୀପ୍ୟତେ । ୪୫ ।

ଯେପରି କୌଣସି ବସ୍ତୁ ଉଦୟାଚଳର ସାମୀପ୍ୟ ହେତୁ ଦୀପ୍ତିମନ୍ତ ହୁଏ, ସେହିପରି ଅଷ୍ଟଜାତୀୟ ଲୋକ ମଧ୍ୟ ପଣ୍ଡିତ-ମାନଙ୍କ ସାହଚର୍ଯ୍ୟ ହେତୁରୁ ଉତ୍କର୍ଷ ଲାଭ କରେ । ୪୫ ।

ଗୁଣା ଗୁଣଜ୍ଞେଷୁ ଗୁଣା ଭବନ୍ତି
ତେ ନିର୍ଗୁଣଂ ପ୍ରାପ୍ୟ ଭବନ୍ତି ଦୋଷାଃ
ଆସ୍ୱାଦ୍ୟତୋୟାଃ ପ୍ରବହନ୍ତି ନଦ୍ୟଃ
ସମୁଦ୍ରମାସାଦ୍ୟ ଭବନ୍ତ୍ୟପେୟାଃ । ୪୬ ।

ନଦୀ ମଧ୍ୟରେ ମଧୁର ଜଳ ପ୍ରବାହିତ ହେଉଥାଏ; ସେତେ-ବେଳେ ତାହା ସୁସ୍ୱାଦୁ ଓ ସୁପେୟ ଥାଏ; କିନ୍ତୁ ନଦୀ ସମୁଦ୍ରରେ ମିଳିତ ହେଲେ ସେହି ଜଳ କ୍ଷାରଯୁକ୍ତ ଓ ଅପେୟ ହୁଏ । ଠିକ୍ ସେହିପରି ବିଦ୍ୟାବିନୟାଦି ଗୁଣ ଗୁଣଜ୍ଞଙ୍କ ନିକଟରେ ସଦ୍‌ଗୁଣ ରୂପେ ରହିଥାଏ; କିନ୍ତୁ କୁପାତ୍ରଗତ ହେଲେ ସେହି ସୁଗୁଣଗୁଡ଼ିକ ଦୋଷ ବା ଦୁର୍ଗୁଣ ରୂପେ ବିବେଚିତ ହୁଏ । ୪୬ ।

ତେଣୁ ମୋର ଏହି ପୁତ୍ରମାନଙ୍କୁ ନୀତିଶାସ୍ତ୍ର ଉପଦେଶ ଦେବା ବିଷୟରେ ଆପଣ ହିଁ ସମର୍ଥ ହେବେ । ଏହା କହି ରାଜା ପୁତ୍ରମାନଙ୍କୁ ଆଣି ବହୁ ସମ୍ମାନପୂର୍ବକ ବିଷ୍ଣୁଶର୍ମାଙ୍କ ହସ୍ତରେ ସମର୍ପଣ କଲେ ।

ତତ୍ପରେ ରାଜପ୍ରାସାଦ ଉପରେ ସ୍ଥିରଭାବରେ ବସିଥିବା ରାଜ-ପୁତ୍ରମାନଙ୍କୁ ସେହି ପଣ୍ଡିତ ବିଷ୍ଣୁଶର୍ମା କହିଲେ, "ହେ ରାଜପୁତ୍ରମାନେ, ମୁଁ ଯାହା କହୁଛି ଶୁଣ ।

କାବ୍ୟ-ଶାସ୍ତ୍ର-ବିନୋଦେନ କାଲୋ ଗଚ୍ଛତି ଧୀମତାମ୍
ବ୍ୟସନେନ ଚ ମୂର୍ଖାଣାଂ ନିଦ୍ରୟା କଲହେନ ବା । ୧ ।

ବୁଦ୍ଧିମାନ୍ ଲୋକେ କାବ୍ୟଶାସ୍ତ୍ର ଆଲୋଚନାରେ କାଳ ଅତି-ବାହିତ କରନ୍ତି; କିନ୍ତୁ ମୂର୍ଖମାନେ ମୃଗୟା, ଦ୍ୟୂତକ୍ରୀଡ଼ା ପ୍ରଭୃତି ବ୍ୟସନରେ, ଶୟନରେ ଅଥବା କଳହରେ କାଳ କଟାଇ ଦିଅନ୍ତି । ୧ ।

ତେଣୁ ତୁମ୍ଭମାନଙ୍କ ଚିତ୍ତବିନୋଦନ ନିମନ୍ତେ କାକ-କଚ୍ଛପ ପ୍ରଭୃତିଙ୍କର ବିଚିତ୍ର କାହାଣୀ କହିବି ।" ଏହା ଶୁଣିଲାମାତ୍ରେ ରାଜ-ପୁତ୍ରମାନେ କହିଲେ, "କହିବା ହେଉ ।" ବିଷ୍ଣୁଶର୍ମା କହିଲେ, —ମୁଁ କହୁଛି, ତୁମ୍ଭେମାନେ ଶୁଣ । ବର୍ତ୍ତମାନ ମୁଁ ମିତ୍ରଲାଭ କଥାଟି ଆରମ୍ଭ କରୁଛି । ଏହାର ପ୍ରଥମ ଶ୍ଳୋକଟି ହେଉଛି—

ଅସାଧନା ବିତ୍ତହୀନା ବୁଦ୍ଧିମନ୍ତଃ ସୁହୃତ୍ତମାଃ
ସାଧୟନ୍ତ୍ୟାଶୁ କାର୍ଯ୍ୟାଣି କାକକୂର୍ମମୃଗାଖୁବତ୍ । ୨ ।

ଅର୍ଥସମ୍ବାଦ-ଉପାୟହୀନ, ଅର୍ଥହୀନ ଅଥଚ ବୁଦ୍ଧିମନ୍ତ ଓ ପରସ୍ପର ବନ୍ଧୁତାସୂତ୍ରରେ ଆବଦ୍ଧ ଲୋକେ କାକ, କଚ୍ଛପ, ହରିଣ ଓ ମୂଷିକ ପରି ଶୀଘ୍ର ନିଜର ଉଦ୍ଦେଶ୍ୟ ସାଧନ କରିବାକୁ ସମର୍ଥ ହୋଇଥାନ୍ତି । ୨ ।

ରାଜପୁତ୍ରମାନେ ପଚାରିଲେ, "କାକକଚ୍ଛପ ପ୍ରଭୃତି କିପରି ଏହା କରିଥିଲେ ?"

## କଥା-୧

ବିଷ୍ଣୁଶର୍ମା କହିଲେ—ଗୋଦାବରୀ ନଦୀତୀରରେ ଗୋଟିଏ ବିଶାଳ ଶାଳ୍ମଳୀ ବୃକ୍ଷ ଅଛି । ବିଭିନ୍ନ ସ୍ଥାନରୁ ପକ୍ଷୀମାନେ ଆସି ରାତିରେ ସେଠାରେ ରହୁଥିଲେ । ଦିନେ ରାତି ପ୍ରଭାତ ହୋଇ ଆସିଲାବେଳକୁ କୁମୁଦିନୀନାଥ ଚନ୍ଦ୍ର ଅସ୍ତାଚଳକୁ ଗମନ କଲେ । ଏହି ସମୟରେ ଲଘୁପତନକ ନାମକ ଗୋଟିଏ ବାୟସ ନିଦ୍ରାରୁ ଉଠି ଜଣେ ବ୍ୟାଧ ଭ୍ରମଣ କରୁଥିବାର ଦେଖିଲା । ସେ ହସ୍ତରେ ଜାଲ ଧରି ଯମ ପରି ଦିଶୁଥିଲା । ତାହାକୁ ଦେଖି ଲଘୁପତନକ ମନେ ମନେ କହିଲା—ଆଜି ସକାଳୁ ଅମଙ୍ଗଳସୂଚକ ଏହାକୁ ଦେଖିଲି । କି ଅମଙ୍ଗଳ ଘଟିବ ଜାଣିପାରୁନାହିଁ । ଏହା କହି ବ୍ୟାକୁଳ ହୃଦୟରେ ସେ ଉକ୍ତ ବ୍ୟାଧକୁ ଅନୁସରଣ କରି ଚାଲିଲା । ଯେହେତୁ—

ଶୋକସ୍ଥାନସହସ୍ରାଣି ଭୟସ୍ଥାନଶତାନି ଚ
ଦିବସେ ଦିବସେ ମୂଢ଼ମାବିଶନ୍ତି ନ ପଣ୍ଡିତମ୍ । ୩ ।

ସହସ୍ର ସହସ୍ର ଶୋକର କାରଣ ଓ ଶତ ଶତ ଭୟର କାରଣ ପ୍ରତିଦିନ ମୂର୍ଖମାନଙ୍କୁ ବ୍ୟାକୁଳ କରିଥାଏ; କିନ୍ତୁ ପଣ୍ଡିତମାନେ ଏମାନଙ୍କ ଦ୍ୱାରା ବିଚଳିତ ହୁଅନ୍ତି ନାହିଁ । (କାରଣ ସେମାନେ ଶୋକ ଓ ଭୟର କାରଣକୁ ପରାଜୟ କରିପାରନ୍ତି ) । ୩ ।

ପୁଣି ସୁଖପ୍ରଦ ବିଷୟ ଅଭିଳାଷ କରୁଥିବା ଗୃହସ୍ଥର କର୍ତ୍ତବ୍ୟ ହେଉଛି ଏଇୟା—

ଉତ୍ଥାୟୋତ୍ଥାୟ ବୋଦ୍ଧବ୍ୟଂ ମହଦ୍‌ଭୟମୁପସ୍ଥିତମ୍
ମରଣବ୍ୟାଧିଶୋକାନାଂ କିମଦ୍ୟ ନିପତିଷ୍ୟତି । ୪ ।

ପ୍ରତିଦିନ ଶଯ୍ୟାରୁ ଉଠୁ ଉଠୁ ଆଜି ମୃତ୍ୟୁ, ରୋଗ, ଶୋକ ଏମାନଙ୍କ ମଧ୍ୟରୁ କେଉଁଟି ଭାଗ୍ୟରେ ଅଛି, ତାହା ବୁଝିବାକୁ ହେବ । ୪ ।

ଏହାପରେ ବ୍ୟାଧ ଗୁଣ୍ଡଳଗୁଡ଼ିଏ ଇତସ୍ତତଃ ଫିଙ୍ଗି ଦେଇ ତାହା ଉପରେ ଜାଲ ବିଛାଇ ଦେଲା ଓ ନିଜେ ଲୁଚି ରହିଲା । ଏହି ସମୟରେ ଚିତ୍ରଗ୍ରୀବ ନାମକ କପୋତରାଜ ନିଜର ପରିବାର ସହିତ ଆକାଶରେ ଉଡ଼ି ଯାଉ ଯାଉ ସେହି ନିକ୍ଷିପ୍ତ ଗୁଣ୍ଡଳଗୁଡ଼ିକୁ ଦେଖିଲା । ଏହି ଗୁଣ୍ଡଳକୁ ଖାଇବାପାଇଁ ଲୋଭ କରୁଥିବା କପୋତମାନଙ୍କୁ ସେ କହିଲା, "ଏପରି ନିର୍ଜନ ବନରେ ଗୁଣ୍ଡଳ କାହୁଁ ଆସିଲା ? ତେଣୁ ପ୍ରଥମେ ବିଚାର କର । ଏପରି ଲୋଭ କରିବାରେ ମୁଁ ମଙ୍ଗଳ ଦେଖି ପାରୁନାହିଁ । ହୁଏତ ଗୁଣ୍ଡଳ ଖାଇବା ଲୋଭରେ ଆମ୍ଭମାନଙ୍କର ଠିକ୍ ସେହିପରି ହେବ—

କଙ୍କଣସ୍ୟାପି ଲୋଭେନ ମଗ୍ନଃ ପଙ୍କେ ସୁଦୁସ୍ତରେ
ବୃଦ୍ଧବ୍ୟାଘ୍ରେଣ ସଂପ୍ରାପ୍ତଃ ପଥିକଃ ସମୃତୋଯଥା । ୫ ।

କଙ୍କଣକୁ ଲୋଭକରି ପଥିକ ଦୁସ୍ତର ପଙ୍କରେ ନିମଗ୍ନ ହୋଇ ଯେପରି ବୃଦ୍ଧ ବ୍ୟାଘ୍ରଦ୍ୱାରା ନିହତ ହୋଇଥିଲା । ୫ ।"

କପୋତମାନେ ପଚାରିଲେ, "କିପରି ପଥିକ ବୃଦ୍ଧ ବ୍ୟାଘ୍ରଦ୍ୱାରା ନିହତ ହୋଇଥିଲା ?" ଚିତ୍ରଗ୍ରୀବ କହିଲା—

## କଥା-୨

ଏକଦା ଦକ୍ଷିଣାରଣ୍ୟରେ ଭ୍ରମଣ କରୁ କରୁ ମୁଁ ଦେଖିଲି, ଗୋଟିଏ ବୃଦ୍ଧ ବ୍ୟାଘ୍ର ସ୍ନାନକରି, ହାତରେ କୁଶ ଧରି ପୁଷ୍କରଣୀ-କୂଳରେ ବସି କହୁଛି—"ହେ ପଥିକମାନେ, ଏହି ସୁବର୍ଣ୍ଣକଙ୍କଣଟି ନିଅ ।" ତହୁଁ ଜଣେ ପଥିକ ଲୋଭାସକ୍ତ ହୋଇ ବିଚାରିଲା—ଭାଗ୍ୟରେ ଥିଲେ ଏପରି କଙ୍କଣ ମିଳେ; କିନ୍ତୁ ଯେଉଁ କାର୍ଯ୍ୟରେ ବିପଦର ଆଶଙ୍କା ଥାଏ, ସେଥିରେ ମନବଳାଇବା ଉଚିତ ନୁହେଁ । ଯେହେତୁ—

ଅନିଷ୍ଟାଦିଷ୍ଟଲାଭେଽପି ନ ଗତିର୍ଜାୟତେ ଶୁଭା
ଯତ୍ରାଽସ୍ତେ ବିଷସଂସର୍ଗୋଽମୃତଂ ତଦପି ମୃତ୍ୟବେ । ୭ ।

ଅନିଷ୍ଟକର ପ୍ରାଣୀଠାରୁ ଇଷ୍ଟଲାଭର ଆଶା ଥିଲେ ସୁଦ୍ଧା ତହିଁରେ ଶୁଭ ଫଳ ମିଳେ ନାହିଁ । ଅମୃତ ବିଷ ସହିତ ସଂଯୁକ୍ତ ହେଲେ ତାହା ମଧ୍ୟ ମୃତ୍ୟୁ ଘଟାଇଥାଏ । ୭ । (ତେଣୁ କଙ୍କଣ ନେବାର ଲୋଭ ତ୍ୟାଗ କରିବା ଉଚିତ । )

କିନ୍ତୁ ସବୁ ସ୍ଥଳରେ ଅର୍ଥ ଉପାର୍ଜନ ବିଷୟରେ ଜୀବନ ପ୍ରତି ଆଶଙ୍କା ଅବଶ୍ୟ ରହିଥାଏ । କଥିତ ଅଛି—

ନ ସଂଶୟମନାରୁହ୍ୟ ନରୋ ଭଦ୍ରାଣି ପଶ୍ୟତି
ସଂଶୟଂ ପୁନରାରୁହ୍ୟ ଯଦି ଜୀବତି ପଶ୍ୟତି । ୭ ।

'ଜୀବନ ଯିବ ବା ଜୀବନ ରହିବ' ଏଭଳି ସଂଶୟକୁ ବରଣ-ପୂର୍ବକ କାର୍ଯ୍ୟରେ ପ୍ରବୃତ୍ତ ନ ହେଲେ ମନୁଷ୍ୟ ଶୁଭ ଫଳ ଲାଭ କରି ନ ପାରେ । ସଂଶୟକୁ ବରଣ କରି କାର୍ଯ୍ୟ କରି କରୁ ବଞ୍ଚି ରହିଲେହିଁ ମନୁଷ୍ୟ ଧନରତ୍ନ ଲାଭ କରେ । ୭ ।

ତେଣୁ ପ୍ରଥମେ ଏହା ସୁବର୍ଣ୍ଣକଙ୍କଣ କି ନା ନିଶ୍ଚୟ କରି ବୁଝେଁ । ଏହାପରେ ବିଚାରକରି ପଥିକ କହିଲା, "ତୁମର କଙ୍କଣ କାହିଁ ?" ବ୍ୟାଘ୍ର ହାତ ବଢ଼ାଇ କଙ୍କଣକୁ ଦେଖାଇ ଦେଲା । ପଥିକ କହିଲା, "ତୁମଭଳି ମାରାତ୍ମକ ଜୀବକୁ କିପରି ବିଶ୍ୱାସ କରିବି ?"

ବ୍ୟାଘ୍ର କହିଲା, "ହେ ପଥିକ, ଶୁଣ । ପୂର୍ବେ ଯୌବନ ଅବସ୍ଥାରେ ମୁଁ ନିତାନ୍ତ ଦୁର୍ବୃତ୍ତ ଥିଲି । ଅନେକ ଗୋମନୁଷ୍ୟ ବଧ-ଜନିତ ପାପରୁ ମୋର ପତ୍ନୀ ଓ ପୁତ୍ରଙ୍କର ମୃତ୍ୟୁ ହେଲା । ଏବେ ମୋର କୁଳରେ ଆଉ କେହି ନାହିଁ । ଏହାପରେ ଜଣେ ଧାର୍ମିକ ଲୋକ

ମୋତେ ଉପଦେଶ ଦେଲେ—ତୁମେ ଦାନଧର୍ମାଦି ପୁଣ୍ୟ କାର୍ଯ୍ୟ କର । ତାଙ୍କର ଉପଦେଶ ଅନୁସାରେ ଏବେ ମୁଁ ସ୍ନାନକରି ଦାନ ଦେବାକୁ ବସିଅଛି । ମୁଁ ବୃଦ୍ଧ, ମୋର ନଖ ଓ ଦାନ୍ତ ଖସି ପଡ଼ୁଛି, ମୋତେ ବିଶ୍ୱାସ ନ କରିବାର କି କାରଣ ଅଛି ? କଥିତ ଅଛି—

ଇଜ୍ୟାଽଧ୍ୟୟନଦାନାନି ତପଃ ସତ୍ୟଂ ଧୃତିଃ କ୍ଷମା
ଅଲୋଭ ଇତି ମାର୍ଗୋଽୟଂ ଧର୍ମସ୍ୟାଽଷ୍ଟବିଧଃ ସ୍ମୃତଃ । ୮ ।

ତତ୍ର ପୂର୍ବଶ୍ଚତୁର୍ବର୍ଗୋ ଦମ୍ଭାର୍ଥମପି ସେବ୍ୟତେ
ଉତ୍ତରସ୍ତୁ ଚତୁର୍ବର୍ଗୋ ମହାତ୍ମନ୍ୟେବ ତିଷ୍ଠତି । ୯ ।

ଧର୍ମର ପନ୍ଥା ଅଷ୍ଟବିଧ; ଯଥା—ଯଜ୍ଞ, ଶାସ୍ତ୍ର ଅଧ୍ୟୟନ, ଦାନ, ତପଃ, ସତ୍ୟ, ଧୃତି, କ୍ଷମା ଓ ଅଲୋଭ ।

ତନ୍ମଧ୍ୟରୁ ପ୍ରଥମ ଚାରୋଟିକୁ ସଂସାରର ବହୁଲୋକ ଖ୍ୟାତି ବା ଯଶୋଲାଭ ଆଶାରେ ଆଚରଣ କରିଥାନ୍ତି । ଶେଷୋକ୍ତ ଚାରୋଟି ( ସତ୍ୟ, ଧୃତି, କ୍ଷମା, ଅଲୋଭ ) ଉଦାରଚେତା ଲୋକମାନଙ୍କଠାରେ ଦେଖିବାକୁ ମିଳେ । ୮-୯ ।

ମୋର ଏତେ ଦୂର ନିର୍ଲୋଭତା ଯେ ମୁଁ ସ୍ୱହସ୍ତସ୍ଥିତ ସୁବର୍ଣ୍ଣକଙ୍କଣଟିକୁ ଯେକୌଣସି ଲୋକକୁ ଦେବାପାଇଁ ଇଚ୍ଛାକରୁଛି । ତଥାପି 'ବ୍ୟାଘ୍ର ମନୁଷ୍ୟ ଖାଏ' ଏହି ଲୋକାପବାଦକୁ ଦୂର କରି ହେଉନାହିଁ । ଯେହେତୁ—

ଗତାଽନୁଗତିକୋ ଲୋକଃ କୁଟ୍ଟନୀମୁପଦେଶିନୀମ୍
ପ୍ରମାଣୟତି ନୋ ଧର୍ମେ ଯଥା ଗୋଘ୍ନମପି ଦ୍ୱିଜମ୍ । ୧୦ ।

ଗୋହତ୍ୟାକାରୀ ବ୍ରାହ୍ମଣ ତଥା ଧର୍ମୋପଦେଶ ଦେଉଥିବା (କୁଟ୍ଟନୀ) ବ୍ୟଭିଚାରିଣୀ ସ୍ତ୍ରୀ (ଧର୍ମାଚରଣ କରୁଥିଲେହେଁ) ଗତାନୁ-

ଗଣ୍ଡକ ପ୍ରାଚୀନପନ୍ଥୀ ଲୋକେ ସେମାନଙ୍କୁ ଆଦର କରନ୍ତି ନାହିଁ । (ସେହିପରି ମୁଁ ପ୍ରଥମ ଜୀବନରେ ହିଂସା କରିଥିବାରୁ ଏବେ ହିଂସା ତ୍ୟାଗ କରିଥିଲେ ସୁଦ୍ଧା ମୋତେ କେହି ବିଶ୍ୱାସ କରୁ-ନାହାନ୍ତି । ) । ୧୦ ।

ମୁଁ ମଧ୍ୟ ଧର୍ମଶାସ୍ତ୍ରମାନ ପାଠକରି ଅଛି । ଶୁଣ—

ମରୁସ୍ଥଲ୍ୟାଂ ଯଥା ବୃଷ୍ଟିଃ କ୍ଷୁଧାର୍ତ୍ତେ ଭୋଜନଂ ତଥା
ଦରିଦ୍ରେ ଦୀୟତେ ଦାନଂ ସଫଳଂ ପାଣ୍ଡୁନନ୍ଦନ । ୧୧ ।

ହେ ପାଣ୍ଡୁନନ୍ଦନ ଯୁଧିଷ୍ଠିର, ମରୁଭୂମିରେ ବର୍ଷା ଯେପରି, କ୍ଷୁଧାର୍ତ୍ତକୁ ଭୋଜନ ଦେବା ସେହିପରି । ଦରିଦ୍ରକୁ ଯେଉଁ ଦାନ ଦିଆଯାଏ ତାହାହିଁ ସାର୍ଥକ । ୧୧ ।

ପ୍ରାଣା ଯଥାଽତ୍ମନୋଽଭୀଷ୍ଟା ଭୂତାନାମପି ତେ ତଥା
ଆତ୍ମୌପମ୍ୟେନ ଭୂତାନାଂ ଦୟାଂ କୁର୍ବନ୍ତି ସାଧବଃ । ୧୨ ।

ନିଜର ପ୍ରାଣ ଯେପରି ପ୍ରତ୍ୟେକ ଜୀବର ପ୍ରିୟ, ସବୁ ଜୀବଙ୍କର ପ୍ରାଣ ମଧ୍ୟ ସେମାନଙ୍କର ସେହିପରି ପ୍ରିୟ । ଏହା ବୁଝି ସାଧୁଲୋକ-ମାନେ ପ୍ରାଣୀମାନଙ୍କ ଉପରେ ଦୟା କରିଥାନ୍ତି । ୧୨ ।

ପ୍ରତ୍ୟାଖ୍ୟାନେ ଚ ଦାନେ ଚ ସୁଖଦୁଃଖେ ପ୍ରିୟାପ୍ରିୟେ
ଆତ୍ମୌପମ୍ୟେନ ପୁରୁଷଃ ପ୍ରମାଣମଧିଗଚ୍ଛତି । ୧୩ ।

ପ୍ରାର୍ଥିତ ବସ୍ତୁ ପାଇବାରେ ବା ନ ପାଇବାରେ, ପ୍ରିୟ ବିଷ-ୟରେ ବା ଅପ୍ରିୟ ବିଷୟରେ ମନୁଷ୍ୟ ନିଜେ ଯେପରି ସୁଖ ବା ଦୁଃଖ ଅନୁଭବ କରେ, ସବୁ ଜୀବ ସେହିପରି ଅନୁଭବ କରନ୍ତି— ଏହା ବୁଝି ସାଧୁଲୋକ ସବୁ ଜୀବପ୍ରତି ଦୟା ପ୍ରଦର୍ଶନ କରିଥାନ୍ତି । ୧୩ । ପୁଣି—

ମାତୃବତ୍ ପରଦାରେଷୁ ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍
ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ପଣ୍ଡିତଃ । ୧୪ ।

ଯେଉଁ ଲୋକ ଅନ୍ୟର ସ୍ତ୍ରୀକୁ ମାତାତୁଲ୍ୟ, ପରର ଧନକୁ ପଥର ଖଣ୍ଡପରି ଓ ସକଳ ପ୍ରାଣୀଙ୍କୁ ନିଜପରି ଦେଖେ ସେ ଯଥାର୍ଥରେ ପଣ୍ଡିତ । ୧୪ ।

ତୁମ୍ଭେ ନିତାନ୍ତ ଦରିଦ୍ର; ତେଣୁ ମୁଁ ଏହି କଙ୍କଣଟି ତୁମ୍ଭଙ୍କୁ ଦେବାକୁ ଇଚ୍ଛୁକ । କଥିତ ଅଛି—

ଦରିଦ୍ରାନ୍ ଭର କୌନ୍ତେୟ ! ମା ପ୍ରଯଚ୍ଛେଶ୍ୱରେ ଧନମ୍ ।
ବ୍ୟାଧିତସ୍ୟୌଷଧଂ ପଥ୍ୟଂ ନୀରୁଜସ୍ୟ କିମୌଷଧୈଃ । ୧୫ ।

ହେ କୁନ୍ତୀପୁତ୍ର ଯୁଧିଷ୍ଠିର, ଦରିଦ୍ରକୁ ଧନ ଦାନ କର । ଧନୀକୁ ଧନ ଦେବା ନିଷ୍ପ୍ରୟୋଜନ । କାରଣ ରୋଗୀପକ୍ଷରେ ସିନା ଔଷଧ ହିତକର; ନୀରୋଗ ଲୋକର ଔଷଧରେ କି ପ୍ରୟୋଜନ ? । ୧୫ ।

ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ
ଦେଶେକାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ବିଦୁଃ । ୧୬ ।

ପ୍ରତ୍ୟୁପକାରର ଆଶା ନ ରଖି 'ଦେବା ଉଚିତ' ବୋଲି ଯେଉଁ ଦାନ ଉପଯୁକ୍ତ ଦେଶ, କାଳ ଓ ପାତ୍ରରେ ଦିଆଯାଏ, ତାହା ସାତ୍ତ୍ୱିକ ଦାନ ବୋଲି କଥିତ ହୁଏ । ୧୬ ।

ଅତଏବ ଏହି ପୁଷ୍କରିଣୀରେ ସ୍ନାନ କରି ସୁବର୍ଣ୍ଣକଙ୍କଣଟିକୁ ଗ୍ରହଣ କର ।"

ଏହା ଶୁଣି ତାହାର କଥାରେ ବିଶ୍ୱାସ କରି ଲୋଭବଶତଃ ପଥିକ ଯେତେବେଳେ ସ୍ନାନକରିବାକୁ ପୁଷ୍କରିଣୀରେ ପ୍ରବେଶ କଲା,

ସେତେବେଳେ ସେ ମହାପଙ୍କରେ ବୁଡ଼ିଯାଇ ଚଳାଇବାକୁ ଅକ୍ଷମ ହେଲା । ପଥିକ ପଙ୍କରେ ପଡ଼ିଥିବାର ଦେଖି ବ୍ୟାଘ୍ର କହିଲା, "ଆହା ! ଗଭୀର ପଙ୍କରେ ପଡ଼ିଗଲ । ମୁଁ ଯାଇ ତୁମକୁ ଉଠାଇ ଆଣୁଛି"— ଏହା କହି ସେ ଧୀରେ ଧୀରେ ପଥିକ ନିକଟକୁ ଯାଇ ତାହାକୁ ଧରିଲା । ସେତେବେଳେ ପଥିକ ଭାବିଲା—

ନ ଧର୍ମଶାସ୍ତ୍ରଂ ପଠତୀତି କାରଣଂ
ନ ଚାପି ବେଦାଧ୍ୟୟନଂ ଦୁରାତ୍ମନଃ
ସ୍ୱଭାବ ଏବାତ୍ର ତଥାଽତିରିଚ୍ୟତେ
ଯଥା ପ୍ରକୃତ୍ୟା ମଧୁରଂ ଗବାଂ ପୟଃ । ୧୭ ।

ଦୁଷ୍ଟଲୋକ ଧର୍ମଶାସ୍ତ୍ର ପାଠ କଲେ ବା ବେଦ ଶିକ୍ଷା କଲେ କି ଫଳ ? ପ୍ରକୃତି ବା ସ୍ୱଭାବହିଁ ଧର୍ମାଚରଣରେ ମୂଳ କାରଣ । (କେହି ସ୍ୱଭାବକୁ ତ୍ୟାଗ କରି ପାରେ ନାହିଁ ।) ଗାଈର ଦୁଧ ସ୍ୱଭାବତଃ ମଧୁର । (ସେହିପରି ଦୁଷ୍ଟଲୋକ ବେଦାଦି ପାଠକଲେ ମଧ୍ୟ ତାର ଦୁଷ୍ଟ ପ୍ରକୃତି ରହିଥାଏ ।) । ୧୭ । ପୁଣି—

ଅବଶେନ୍ଦ୍ରିୟଚିତ୍ତାନାଂ ହସ୍ତିସ୍ନାନମିବ କ୍ରିୟା
ଦୁର୍ଭଗାଽଭରଣପ୍ରାୟୋ ଜ୍ଞାନଂ ଭାରଃ କ୍ରିୟାଂ ବିନା । ୧୮ ।

ହସ୍ତୀ ଯେପରି ସ୍ନାନ କଲାପରେ ପୁଣି ଦେହକୁ ଧୂଳିରେ ମଳିନ କରିଦିଏ ଓ ଫଳରେ ତାର ସ୍ନାନର କିଛି ମୂଲ୍ୟ ରହେ ନାହିଁ, ସେହିପରି ଯାହାର ଚିତ୍ତ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ନ ଥାଏ, ତାହାର କର୍ମ ନିରର୍ଥକ । ତାହାର ଜ୍ଞାନ ଧର୍ମାଦି କ୍ରିୟା ବିନା ବିଧବା ରମଣୀର ଅଳଙ୍କାର ସଦୃଶ ଭାର ମାତ୍ର ହୋଇଥାଏ । ୧୮ ।

ତେଣୁ ମୁଁ ମାରାତ୍ମକ ବ୍ୟାଘ୍ରକୁ ବିଶ୍ୱାସ କରି ଭଲ କାମ କରି ନାହିଁ । କଥିତ ଅଛି—

ନଦୀନାଂ ଶସ୍ତ୍ରପାଣୀନାଂ ନଖିନାଂ ଶୃଙ୍ଗିଣାଂ ତଥା
ବିଶ୍ୱାସୋ ନୈବ କର୍ତ୍ତବ୍ୟଃ ସ୍ତ୍ରୀଷୁ ରାଜକୁଳେଷୁ ଚ । ୧୯ ।

ନଦୀ, ଶସ୍ତ୍ରଧାରୀ ପୁରୁଷ, ନଖଯୁକ୍ତ ପ୍ରାଣୀ, ଶୃଙ୍ଗଧାରୀ ପ୍ରାଣୀ, ସ୍ତ୍ରୀ ଓ ରାଜକୁଳ ଏମାନଙ୍କଠାରେ ବିଶ୍ୱାସ କରିବା ଉଚିତ ନୁହେଁ । ୧୯ ।

ସର୍ବସ୍ୟ ହି ପରୀକ୍ଷନ୍ତେ ସ୍ୱଭାବା ନେତରେ ଗୁଣାଃ
ଅତୀତ୍ୟ ହି ଗୁଣାନ୍ ସର୍ବାନ୍ ସ୍ୱଭାବୋ ମୂର୍ଦ୍ଧ୍ନି ବର୍ତ୍ତତେ । ୨୦ ।

ଜାତିଗତ ସ୍ୱଭାବ ଅନ୍ୟସବୁ ସଦ୍‌ଗୁଣ ଓ ଦୁର୍ଗୁଣର ଊର୍ଦ୍ଧ୍ୱରେ ଅବସ୍ଥାନ କରେ । ତେଣୁ ସମସ୍ତଙ୍କର ସ୍ୱଭାବକୁ ପରୀକ୍ଷା କରି ଦେଖିବା ଉଚିତ । ଅନ୍ୟ ଗୁଣକୁ ଦେଖିବା ଅନାବଶ୍ୟକ । ୨୦ । ପୁଣି—

ସ ହି ଗଗନବିହାରୀ କଳ୍ମଷଧ୍ୱଂସକାରୀ
ଦଶଶତକରଧାରୀ ଜ୍ୟୋତିଷାଂ ମଧ୍ୟଚାରୀ ।
ବିଧୁରପି ବିଧିଯୋଗାଦ୍ ଗ୍ରସ୍ୟତେ ରାହୁଣାଽସୌ
ଲିଖିତମପି ଲଲାଟେ ପ୍ରୋଜ୍‌ଝିତୁଂ କଃ ସମର୍ଥଃ ।୨୧।

ବିଶାଳ ଗଗନରେ ବିଚରଣକାରୀ, କଳୁଷର ବିନାଶକର୍ତ୍ତା, ସହସ୍ର କିରଣଧାରୀ ସୂର୍ଯ୍ୟଙ୍କୁ ଓ ତାରାଗଣ ମଧ୍ୟରେ ଅବସ୍ଥିତ ଚନ୍ଦ୍ରଙ୍କୁ ଦୈବବଶତଃ ରାହୁ ଗ୍ରାସ କରିଥାଏ । ଯାହା କପାଳରେ ଲେଖା ଥାଏ, ତାକୁ କେହି ପୋଛି ଦେଇ ପାରିବେ ନାହିଁ । ୨୧ ।

ପଥିକ ଏହିପରି ଚିନ୍ତା କରୁଥିବା ସମୟରେ ବ୍ୟାଘ୍ର ତାହାକୁ ଧରି ବଧ କଲା ଓ ଖାଇଲା; ତେଣୁ କଙ୍କଣକୁ ଲୋଭ କରି ପଥିକ ନିହତ ହେଲା ବୋଲି ମୁଁ କହୁଥିଲି । ଅତଏବ ସମ୍ୟକ୍‌ରୂପେ ବିଚାର ନ କରି କୌଣସି କାର୍ଯ୍ୟ କରିବା ଉଚିତ ନୁହେଁ । ଯେହେତୁ—

ସୁଜୀର୍ଣ୍ଣମନ୍ନଂ ସୁବିଚକ୍ଷଣଃ ସୁତଃ
ସୁଶାସିତା ସ୍ତ୍ରୀ ନୃପତିଃ ସୁସେବିତଃ
ସୁଚିନ୍ତ୍ୟ ଚୋକ୍ତଂ ସୁବିଚାର୍ଯ୍ୟ ଯତ୍ କୃତଂ
ସୁଦୀର୍ଘକାଳେଽପି ନ ଯାତି ବିକ୍ରିୟାମ୍ । ୨୨ ।

ସୁପକ୍ୱ ଭୋଜନ, ଅତି ବିଚକ୍ଷଣ ପୁତ୍ର, ଶାସନାଧୀନା ପତ୍ନୀ, ସୁସେବିତ ରାଜା ଓ ସୁବିବେଚିତ କାର୍ଯ୍ୟ—ଏସବୁ କେବେହେଲେ ଦୁଃଖର କାରଣ ହୋଇ ନଥାନ୍ତି । ୨୨ ।

ଏହା ଶୁଣି ଗୋଟିଏ କପୋତ ଗର୍ବସହକାରେ କହିଲା—ଆଃ, ଏସବୁ କଅଣ କହୁଛ ?

ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟମାପତ୍କାଳେହ୍ୟୁପସ୍ଥିତେ
ସର୍ବତ୍ରୈବ ବିଚାରେ ଚ ଭୋଜନେଽପ୍ୟପ୍ରବର୍ତ୍ତନମ୍ । ୨୩ ।

ବିଶେଷ ବିପଦ ସମସ୍ତ ଉପସ୍ଥିତ ହେଲେ ବୃଦ୍ଧମାନଙ୍କର ବାକ୍ୟ ଗ୍ରହଣ କରିବା ବିଧେୟ । ସବୁ କ୍ଷେତ୍ରରେ ବୃଦ୍ଧମାନଙ୍କର ଉପଦେଶ ଗ୍ରହଣୀୟ ହେଲେ ମଧ୍ୟ ଆହାର ବିଷୟରେ ତାହା ଗ୍ରହଣୀୟ ନୁହେଁ । ୨୩ । ଯେହେତୁ—

ଶଙ୍କାଭିଃ ସର୍ବମାକ୍ରାନ୍ତମନ୍ନପାନଞ୍ଚ ଭୂତଳେ
ପ୍ରବୃତ୍ତିଃ କୁତ୍ର କର୍ତ୍ତବ୍ୟା ଜୀବିତବ୍ୟଂ କଥଂ ନୁ ବା । ୨୪ ।

ପୃଥିବୀରେ ପାନଭୋଜନ ମଧ୍ୟ ଆଶଙ୍କାପୂର୍ଣ୍ଣ । ତାହାହେଲେ କିପରି ଚଳିବା ? ବଞ୍ଚିବା ଅବା କିପରି । ୨୪ ।

ତେଣୁ ସଂଶୟବଶତଃ ତଣ୍ଡୁଳ ତ୍ୟାଗ କରିବା ଉଚିତ ନୁହେଁ । କଥିତ ଅଛି—

ଈର୍ଷୀ ଘୃଣୀ ତ୍ୱସନ୍ତୁଷ୍ଟଃ କ୍ରୋଧନୋ ନିତ୍ୟଶଙ୍କିତଃ
ପରଭାଗ୍ୟୋପଜୀବୀ ଚ ଷଡ଼େତେ ଦୁଃଖଭାଗିନଃ । ୨୫ ।

ଈର୍ଷାପରାୟଣ, ଘୃଣାକାରୀ, ଅସନ୍ତୁଷ୍ଟ, କ୍ରୋଧଶୀଳ, ସର୍ବଦା ଶଙ୍କାକୁଳ ଓ ପରାଧୀନ—ଏହି ଛଅ ଶ୍ରେଣୀର ପ୍ରାଣୀ ଦୁଃଖଭୋଗ କରିଥାନ୍ତି । ୨୫ ।

ଏହା ଶୁଣି ସବୁ କପୋତ ତଣ୍ଡୁଳକଣାଲୋଭରେ ଆକାଶ-ମଣ୍ଡଳରୁ ଓହ୍ଲାଇ ସେହି ଜାଲ ଉପରେ ବସି ପଡ଼ିଲେ ।

ସୁମହାନ୍ତ୍ୟପି ଶାସ୍ତ୍ରାଣି ଧାରୟନ୍ତୋ ବହୁଶ୍ରୁତାଃ
ଛେତ୍ତାରଃ ସଂଶୟାନାଞ୍ଚ କ୍ଲିଶ୍ୟନ୍ତେ ଲୋଭମୋହିତାଃ । ୨୬ ।

ଗଭୀର ତତ୍ତ୍ୱପୂର୍ଣ୍ଣ ଶାସ୍ତ୍ର ଅଧ୍ୟୟନ କରିଥିବା, ବିପୁଳଜ୍ଞାନ-ସମ୍ପନ୍ନ, ବହୁବିଧ ସଂଶୟ ଦୂରୀକରଣରେ ସମର୍ଥ ପଣ୍ଡିତମାନେ ମଧ୍ୟ ଲୋଭର ବଶବର୍ତ୍ତୀ ହେଲେ କ୍ଲେଶଭୋଗ କରିଥାନ୍ତି । ୨୬ । ପୁଣି—

ଲୋଭାତ୍ କ୍ରୋଧଃ ପ୍ରଭବତି
ଲୋଭାତ୍ କାମଃ ପ୍ରଜାୟତେ
ଲୋଭାନ୍ମୋହଶ୍ଚ ନାଶଶ୍ଚ
ଲୋଭଃ ପାପସ୍ୟ କାରଣମ୍ । ୨୭ ।

ଲୋଭରୁ କ୍ରୋଧ ଜାତ ହୁଏ; ଲୋଭରୁ କାମନାର ଉତ୍ପତ୍ତି ହୁଏ । ଲୋଭହିଁ ମୋହ (ଅବିବେକତା) ଓ ବିନାଶ (ମୃତ୍ୟୁ)ର କାରଣ । ଏହି ଲୋଭ ସକଳ ପ୍ରକାର ପାପର ମୂଳ ଅଟେ । ୨୭ ।

ଅସମ୍ଭବଂ ହେମମୃଗସ୍ୟ ଜନ୍ମ
ତଥାପି ରାମୋ ଲୁଲୁଭେ ମୃଗାୟ
ପ୍ରାୟଃ ସମାପନ୍ନବିପତ୍ତିକାଲେ
ଧିୟୋଽପି ପୁଂସାଂ ମଳିନା ଭବନ୍ତି । ୨୮ ।

ସୁନାର ହରିଣ ଜନ୍ମିବା ଅସମ୍ଭବ । ତଥାପି ଭଗବାନ୍ ରାମଚନ୍ଦ୍ର ସୁନାର ହରିଣ ପାଇଁ ଲୋଭପରବଶ ହୋଇଥିଲେ । ବିପତ୍କାଳ

ଉପସ୍ଥିତ ହେଲେ ଜ୍ଞାନୀ ଲୋକେ ମଧ୍ୟ କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାରଶୂନ୍ୟ ହୋଇପଡ଼ନ୍ତି । ୨୮ ।

ଏହାପରେ ସବୁ କପୋତ ଜାଲବନ୍ଧନରେ ପଡ଼ିଲେ । ତହୁଁ ଯେଉଁ କପୋତର କଥାରେ ସେମାନେ ସେଠାରେ ଓହ୍ଲାଇ ଥିଲେ, ତାହାକୁ ସମସ୍ତେ ତିରସ୍କାର କରିବାକୁ ଲାଗିଲେ । ଯେହେତୁ—

ନ ଗଣସ୍ୟାଗ୍ରତୋ ଗଚ୍ଛେତ୍
ସିଦ୍ଧେ କାର୍ଯ୍ୟେ ସମଂ ଫଳମ୍
ଯଦି କାର୍ଯ୍ୟବିପତ୍ତିଃ ସ୍ୟା-
ନ୍ମୁଖରସ୍ତତ୍ର ହନ୍ୟତେ । ୨୯ ।

କୌଣସି ଦଳର ଅଗ୍ରଣୀ ହେବା ଉଚିତ ନୁହେଁ । ଉଦ୍ଦେଶ୍ୟ ସିଦ୍ଧ ହେଲେ ସମସ୍ତେ ସମାନ ଭାବରେ ଫଳ ଭୋଗ କରନ୍ତି; କିନ୍ତୁ ଦୈବାତ୍ ଉଦ୍ଦେଶ୍ୟ ବିଫଳ ହେଲେ ନେତାହିଁ ତିରସ୍କାରର ପାତ୍ର ହୁଏ । ୨୯ ।

ତାହାକୁ ସମସ୍ତେ ତିରସ୍କାର କରିବାର ଶୁଣିପାରି ଚିତ୍ରଗ୍ରୀବ କହିଲା, "ଏହା ସେହି କପୋତର ଦୋଷ ନୁହେଁ । ଯେହେତୁ—

ଆପଦାମାପତନ୍ତୀନାଂ ହିତୋଽପ୍ୟାୟାତି ହେତୁତାମ୍
ମାତୃଜଙ୍ଘା ହି ବତ୍ସସ୍ୟ ସ୍ତମ୍ଭୀଭବତି ବନ୍ଧନେ । ୩୦ ।

ବିପଦ ଆସିବାବେଳେ ହିତକାରୀ ବ୍ୟକ୍ତି ମଧ୍ୟ ବିପଦର କାରଣ ହୋଇଥାଏ । ଗାଈର ଜଙ୍ଘ ଦୋହନ ସମୟରେ ବାଛୁରିର ବନ୍ଧନସ୍ତମ୍ଭରେ ପରିଣତ ହୋଇଥାଏ । (ତେଣୁ ଏହି କପୋତ ଉପରେ ଦୋଷାରୋପ କରିବା ଅନୁଚିତ । ) ପୁଣି—

ସ ବନ୍ଧୁର୍ଯୋ ବିପନ୍ନାନାମାପଦୁଦ୍ଧରଣକ୍ଷମଃ
ନ ତୁ ଭୀତପରିତ୍ରାଣବସ୍ତୂପାଲମ୍ଭପଣ୍ଡିତଃ । ୩୧ ।

ଯିଏ ବିପନ୍ନ ବ୍ୟକ୍ତିଙ୍କୁ ଆପଦରୁ ଉଦ୍ଧାର କରିବାକୁ ସମର୍ଥ ସେଇ ହେଉଛି ପ୍ରକୃତ ବନ୍ଧୁ । ଯିଏ ବିପଦ ସମୟରେ ଉଦ୍ଧାର ନକରି କେବଳ ତିରସ୍କାର କରି ପାଣ୍ଡିତ୍ୟ ଦେଖାଏ, ସେ ବନ୍ଧୁ ନୁହେଁ । ୩୧ ।

ବିପଦ ସମୟରେ ଚିତ୍ତକୁ ବ୍ୟାକୁଳ କରିବା କାପୁରୁଷର ଲକ୍ଷଣ । ତେଣୁ ଏ କ୍ଷେତ୍ରରେ ଧୈର୍ଯ୍ୟ ଅବଲମ୍ବନପୂର୍ବକ ପ୍ରତିକାର ଚିନ୍ତା କରିବା ଉଚିତ । ଯେହେତୁ—

ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ
ଯଶସି ଚାଭିରୁଚିର୍ବ୍ୟସନଂ ଶ୍ରୁତୌ
ପ୍ରକୃତିସିଦ୍ଧମିଦଂ ହି ମହାତ୍ମନାମ୍ । ୩୨ ।

ବିପଦରେ ଧୈର୍ଯ୍ୟ ଅବଲମ୍ବନ, ସମ୍ପଦଲାଭରେ କ୍ଷାନ୍ତି (ଅନୌଦ୍ଧତ୍ୟ), ବିଦ୍ୱାନ୍‌ସମାଜରେ ବାକ୍‌ପଟୁତା, ସଂଗ୍ରାମରେ ବିକ୍ରମ, ଯଶରେ ଅଭିଳାଷ, ଶାସ୍ତ୍ରାଧ୍ୟୟନରେ ଗଭୀର ଆସକ୍ତି—ଏସବୁ ମହାପୁରୁଷମାନଙ୍କର ସ୍ୱଭାବଗତ ଗୁଣ । ୩୨ ।

ସମ୍ପଦି ଯସ୍ୟ ନ ହର୍ଷୋ ବିପଦି
ବିଷାଦୋ ରଣେ ଚ ଧୀରତ୍ୱମ୍
ତଂ ଭୁବନତ୍ରୟତିଲକଂ ଜନୟତି
ଜନନୀ ସୁତଂ ବିରଳମ୍ । ୩୩ ।

ସମ୍ପଦ ଲାଭରେ ଯାହାର ହର୍ଷ ହୁଏ ନାହିଁ, ବିପଦରେ ଯାହାର ବିଷାଦ ହୁଏ ନାହିଁ, ଯୁଦ୍ଧରେ ଯେ ଧୀରତା ପ୍ରକାଶ

କରେ ନାହିଁ—ଏପରି ଗୁଣବାନ୍ ପୁତ୍ର ତିନି ଭୁବନରେ ଶ୍ରେଷ୍ଠ ।
ଏପରି ପୁତ୍ରର ଜନନୀ କ୍ୱଚିତ୍ ଦେଖାଯାନ୍ତି । ୩୩ । ପୁଣି—

ଷଡ଼୍ ଦୋଷାଃ ପୁରୁଷେଣେହ ହାତବ୍ୟା ଭୂତିମିଚ୍ଛତା
ନିଦ୍ରା ତନ୍ଦ୍ରା ଭୟଂ କ୍ରୋଧ ଆଳସ୍ୟଂ ଦୀର୍ଘସୂତ୍ରତା । ୩୪ ।

ସଂସାରରେ ଐଶ୍ୱର୍ଯ୍ୟକାମୀ ପୁରୁଷ ନିଦ୍ରା, ତନ୍ଦ୍ରା, ଭୟ, କ୍ରୋଧ, ଆଳସ୍ୟ ଓ ଦୀର୍ଘସୂତ୍ରତା ଏହି ଛଅଟି ଦୋଷକୁ ପରିହାର କରିବା ଉଚିତ । ୩୪ ।

ବର୍ତ୍ତମାନ ଏହାହିଁ କରାଯାଉ । ସମସ୍ତେ ଏକମନ ହୋଇ ଜାଲକୁ ନେଇ ଉଡ଼ିଯିବା । କାରଣ—

ଅଳ୍ପାନାମପି ବସ୍ତୂନାଂ ସଂହତିଃ କାର୍ଯ୍ୟସାଧିକା
ତୃଣୈର୍ଗୁଣତ୍ୱମାପନ୍ନୈର୍ବଧ୍ୟନ୍ତେ ମତ୍ତଦନ୍ତିନଃ । ୩୫ ।

ସାମାନ୍ୟ ତୃଣ ଏକତ୍ର ମିଳିତ ହୋଇ ରଜ୍ଜୁରେ ପରିଣତ ହେଲେ ତାହା ମତ୍ତହସ୍ତୀକୁ ମଧ୍ୟ ବନ୍ଧନ କରିବାକୁ ସମର୍ଥ ହୁଏ । ଅତଏବ ସାମାନ୍ୟ ଦୁର୍ବଳ ପ୍ରାଣୀମାନେ ମିଳିତ ହୋଇ ମହାନ୍ କାର୍ଯ୍ୟ ସାଧନ କରିପାରିବେ । ୩୫ ।

ସଂହତିଃ ଶ୍ରେୟସୀ ପୁଂସାଂ ସ୍ୱକୁଲୈରଳ୍ପକୈରପି
ତୁଷେଣାପି ପରିତ୍ୟକ୍ତା ନ ପ୍ରରୋହନ୍ତି ତଣ୍ଡୁଳାଃ । ୩୬ ।

ନିଜର ଅଳ୍ପସଂଖ୍ୟକ ଦୁର୍ବଳ ପରିବାରବର୍ଗଙ୍କର ସଂହତି ମନୁଷ୍ୟପକ୍ଷରେ ମଙ୍ଗଳକର । ଦେଖ, ତୁଷ ନ ଥିଲେ ଧାନରୁ ଅଙ୍କୁର ହୋଇ ପାରନ୍ତା ନାହିଁ । ୩୬ ।

ଏହିପରି ବିଚାର କରି ସମସ୍ତ କପୋତ ଜାଲକୁ ଘେନି ଉଡ଼ିଗଲେ । ଦୂରରୁ ବ୍ୟାଧ ଦେଖିଲା ଯେ କପୋତମାନେ ଜାଲକୁ

ଯେପରି ଉଡ଼ି ଯାଉଛନ୍ତି । ସେ ସେମାନଙ୍କ ପଛେ ପଛେ ଦଉଡ଼ି ଚାଲିଲା—

ସଂହତାସ୍ତୁ ହରନ୍ତ୍ୟେତେ ମମ ଜାଲଂ ବିହଙ୍ଗମାଃ ।
ଯଦା ତୁ ନିପତିଷ୍ୟନ୍ତି ବଶମେଷ୍ୟନ୍ତି ମେ ତଦା । ୩୭ ।

ଏହି କପୋତମାନେ ଏକତ୍ର ମିଳି ମୋର ଜାଲକୁ ନେଇ ଯାଉଅଛନ୍ତି; କିନ୍ତୁ ଯେତେବେଳେ ଏମାନେ ପୃଥିବୀ ଉପରେ ଖସି ପଡ଼ିବେ, ସେତେବେଳେ ମୋର କରଗତ ହେବେ । ୩୭ ।

କପୋତମାନେ କ୍ରମେ ଅଦୃଶ୍ୟ ହୋଇଯିବାରୁ ବ୍ୟାଧ ଲେଉଟି ଆସିଲା । ବ୍ୟାଧ ଫେରି ଯିବାର ଦେଖି କପୋତମାନେ ଚିତ୍ରଗ୍ରୀବଙ୍କୁ କହିଲେ, "ପ୍ରଭୁ, ଏବେ କଅଣ କରିବାକୁ ହେବ ?" ଚିତ୍ରଗ୍ରୀବ ଉତ୍ତର କଲା—

ମାତା ମିତ୍ରଂ ପିତା ଚେତି ସ୍ୱଭାବାତ୍ ତ୍ରିତୟଂ ହିତମ୍ ।
କାର୍ଯ୍ୟକାରଣତଶ୍ଚାନ୍ୟେ ଭବନ୍ତି ହିତବୁଦ୍ଧୟଃ । ୩୮ ।

ମାତା, ମିତ୍ର ଓ ପିତା—ଏ ତିନିହେଁ ସ୍ୱଭାବତଃ ହିତକର ଅଟନ୍ତି । ଏମାନଙ୍କ ଛଡ଼ା ଅନ୍ୟମାନେ କେହି କାର୍ଯ୍ୟବଶତଃ କେହି ଅବା କାରଣବଶତଃ ହିତକାରୀ ହୋଇଥାନ୍ତି । ୩୮ ।

ଗଣ୍ଡକୀ ନଦୀତୀରରେ ଚିତ୍ରବନରେ ମୋର ମିତ୍ର ମୂଷିକରାଜ ହିରଣ୍ୟକ ବାସ କରନ୍ତି । ସେ ଆମ୍ଭମାନଙ୍କର ଏହି ଜାଲକୁ କାଟି-ଦେଇ ପାରିବେ । ଏହା ବିଚାରି ସେମାନେ ହିରଣ୍ୟକର ଗର୍ତ୍ତ-ନିକଟରେ ଉପସ୍ଥିତ ହେଲେ ।

ହିରଣ୍ୟକ ବିପଦ ଆଶଙ୍କାରେ ଶତଦ୍ୱାରବିଶିଷ୍ଟ ଗର୍ତ୍ତ ମଧ୍ୟରେ ବାସ କରୁଥିଲା । କପୋତମାନଙ୍କର ଓହ୍ଲାଇବା ଶବ୍ଦରେ ଚକିତ

ହୋଇ ହିରଣ୍ୟକ କିଛିକ୍ଷଣ ତୁନି ହୋଇ ରହିଲା । ଚିତ୍ରଗ୍ରୀବ କହିଲା, "ବନ୍ଧୁ ହିରଣ୍ୟକ, ଆମ୍ଭମାନଙ୍କୁ କାହିଁକି ସମ୍ଭାଷଣ କରୁନାହଁ ?" ତହୁଁ ହିରଣ୍ୟକ ନିଜ ବନ୍ଧୁଙ୍କର ଶବ୍ଦ ବାରିପାରି ଆନନ୍ଦରେ ଗର୍ତ୍ତରୁ ବାହାରି କହିଲା, "ଓଃ ! ମୋର ବହୁତ ପୁଣ୍ୟ ଯେ ଆଜି ମୋର ପ୍ରିୟ ମିତ୍ର ଚିତ୍ରଗ୍ରୀବ ଆସିଛନ୍ତି ।

ଯସ୍ୟ ମିତ୍ରେଣ ସମ୍ଭାଷୋ ଯସ୍ୟ ମିତ୍ରେଣ ସଂସ୍ଥିତିଃ
ଯସ୍ୟ ମିତ୍ରେଣ ସଂଲାପସ୍ତତୋ ନାସ୍ତୀହ ପୁଣ୍ୟବାନ୍ । ୩୯ ।

ଯିଏ ମିତ୍ର ସହିତ ସମ୍ଭାଷଣ କରେ, ମିତ୍ର ସହିତ ବାସ କରେ, ମିତ୍ର ସହିତ ଆଳାପ କରେ, ତାହାଠାରୁ ପୁଣ୍ୟବାନ୍ ଆଉ କେହି ନାହିଁ ।" ୩୯ ।

ଏହାପରେ ହିରଣ୍ୟକ ସେମାନଙ୍କୁ ଜାଲରେ ଆବଦ୍ଧ ଥିବାର ଦେଖି କହିଲା, "ବନ୍ଧୁ ! ଏ କଅଣ ?" ଚିତ୍ରଗ୍ରୀବ କହିଲା, "ସଖେ, ଏହା ହେଉଛି, ଆମର ପୂର୍ବଜନ୍ମର କର୍ମଫଳ ।

ଯସ୍ମାଚ୍ଚ ଯେନ ଚ ଯଥା ଚ ଯଦା ଚ ଯଚ୍ଚ
ଯାବଚ୍ଚ ଯତ୍ର ଚ ଶୁଭାଽଶୁଭମାତ୍ମ କର୍ମ ।
ତସ୍ମାଚ୍ଚ ତେନ ଚ ତଥା ଚ ତଦା ଚ ତଚ୍ଚ
ତାବଚ୍ଚ ତତ୍ର ଚ ବିଧାତୃବଶାଦୁପୈତି । ୪୦ ।

ଯେଉଁଠାରୁ, ଯାହାଦ୍ୱାରା, ଯେତେବେଳେ ଓ ଯେପର୍ଯ୍ୟନ୍ତ ଯେଉଁ ଶୁଭ ବା ଅଶୁଭ ବିଧିଦ୍ୱାରା ନିର୍ଦ୍ଦିଷ୍ଟ ଥାଏ, ତାହାଠାରୁ, ତାହାଦ୍ୱାରା, ସେତେବେଳେ ଓ ସେପର୍ଯ୍ୟନ୍ତ ତାହା ଭୋଗିବାକୁ ହୁଏ । ୪୦ ।

ରୋଗଶୋକପରୀତାପବନ୍ଧନବ୍ୟସନାନି ଚ
ଆତ୍ମାଽପରାଧବୃକ୍ଷାଣାଂ ଫଳାନ୍ୟେତାନି ଦେହିନାମ୍ । ୪୧ ।

ଦେହୀମାନଙ୍କର ରୋଗ, ଶୋକ, ବେଦନା, ବନ୍ଧନ ଆଦି ବିପତ୍ତି ସ୍ୱକୃତ ପାପରୂପକ ବୃକ୍ଷର ଫଳ ଅଟେ ।'' । ୪୧ ।

ଏହା ଶୁଣି ମୂଷିକରାଜ ହିରଣ୍ୟକ ଶୀଘ୍ର ଚିତ୍ରଗ୍ରୀବର ବନ୍ଧନ ଛେଦନ କରିବାକୁ ଅଗ୍ରସର ହେବାରୁ ଚିତ୍ରଗ୍ରୀବ କହିଲା, "ମିତ୍ର, ପ୍ରଥମେ ମୋର ବନ୍ଧନ ଛେଦନ କରିବା ଅନୁଚିତ । ପ୍ରଥମତଃ ମୋର ଏହି ଆଶ୍ରିତମାନଙ୍କର ବନ୍ଧନ ଛେଦନ କର । ତାହାପରେ ମୋର ପାଶ ଛେଦନ କରିବ ।'' ହିରଣ୍ୟକ କହିଲା, "ମୋର ଶକ୍ତି ସାମାନ୍ୟ; ମୋର ଦନ୍ତଗୁଡ଼ିକ କୋମଳ । ଏ ସମସ୍ତଙ୍କର ପାଶ ଛେଦନ କରିବାକୁ କିପରି ସମର୍ଥ ହେବି ? ତେଣୁ ମୋର ଦାନ୍ତଗୁଡ଼ିକ ଭାଙ୍ଗିବା ପୂର୍ବରୁ ତୁମର ପାଶ ଛେଦନ କରିବି । ତାହା ପରେ ଯେତେଦୂର ପାରେଁ ଏମାନଙ୍କର ପାଶ ମଧ୍ୟ ଛେଦନ କରିବି ।'' ଚିତ୍ରଗ୍ରୀବ କହିଲା, "ତାହାହିଁ ହେଉ, ତଥାପି ଯଥାଶକ୍ତି ଏମାନଙ୍କର ବନ୍ଧନ ମଧ୍ୟ ଛେଦନ କର ।'' ହିରଣ୍ୟକ କହିଲା, "ସ୍ୱାର୍ଥ ପରିତ୍ୟାଗ କରି ଆଶ୍ରିତମାନଙ୍କୁ ରକ୍ଷା କରିବା ନୀତିଜ୍ଞ-ମାନଙ୍କର ମତ ନୁହେଁ । ଯେହେତୁ—

ଆପଦର୍ଥେ ଧନଂ ରକ୍ଷେଦ୍ଦାରାନ୍ ରକ୍ଷେଦ୍ ଧନୈରପି
ଆତ୍ମାନଂ ସତତଂ ରକ୍ଷେଦ୍ଦାରୈରପି ଧନୈରପି । ୪୨ ।

ବିପତ୍ତିରୁ ଉଦ୍ଧାର ପାଇବା ନିମନ୍ତେ ଧନକୁ ରକ୍ଷା କରିବ; ଧନକୁ ତ୍ୟାଗକରି ସ୍ତ୍ରୀକୁ ରକ୍ଷା କରିବ ଏବଂ ବିପଦରେ ପଡ଼ିଲେ ଧନ ଓ ସ୍ତ୍ରୀକୁ ମଧ୍ୟ ତ୍ୟାଗ କରି ନିଜକୁ ରକ୍ଷାକରିବ । ୪୨ ।

ଧର୍ମାର୍ଥକାମମୋକ୍ଷାଣାଂ ପ୍ରାଣାଃ ସଂସ୍ଥିତିହେତବଃ
ତାନ୍ ନିଘ୍ନତା କିନ୍ନ ହତଂ ? ରକ୍ଷତା କିଂ ନ ରକ୍ଷିତମ୍ । ୪୩ ।

ପ୍ରାଣ ହେଉଛି ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗର କାରଣ । ତେଣୁ ଯିଏ ନିଜର ପ୍ରାଣକୁ ନାଶକରେ, ସେ କଅଣ ନାଶ ନ କରେ ? ସେହିପରି ଯେ ପ୍ରାଣକୁ ରକ୍ଷା କରେ, ସେ କଅଣ ରକ୍ଷା ନ କରେ ? (ଅର୍ଥାତ୍ ନିଜର ପ୍ରାଣନାଶ ଦ୍ୱାରା ସର୍ବସ୍ୱ ନାଶ ହୁଏ ଓ ନିଜର ପ୍ରାଣରକ୍ଷା ଦ୍ୱାରା ସର୍ବସ୍ୱ ରକ୍ଷା ହୁଏ । )" । ୪୩ ।

ଚିତ୍ରଗ୍ରୀବ କହିଲା, "ସଖେ, ତୁମେ ଯାହା କହିଲ, ତାହା ନୀତିସମ୍ମତ ସତ୍ୟ; କିନ୍ତୁ ମୁଁ ମୋର ଆଶ୍ରିତମାନଙ୍କର କଷ୍ଟ ସହ୍ୟ କରିବାକୁ ସର୍ବଥା ଅସମର୍ଥ । ତେଣୁ ସେପରି କହିଲି । ଯେହେତୁ—

ଧନାନି ଜୀବିତଞ୍ଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ୍
ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି । ୪୪ ।

ବୁଦ୍ଧିମାନ୍ ଲୋକ ପରୋପକାର ନିମନ୍ତେ ନିଜର ଧନ ଓ ପ୍ରାଣ ଦେଇଥାଏ । ଧନ ଓ ପ୍ରାଣ ବିନାଶଶୀଳ ହୋଇଥିବାରୁ ତାହାକୁ ସତ୍କାର୍ଯ୍ୟରେ ବିନିଯୋଗ କରିବା ଶ୍ରେୟସ୍କର ଅଟେ । ୪୪ । ଏହାଛଡ଼ା ଆଉ ଗୋଟିଏ ବିଶେଷ କାରଣ ଅଛି—

ଜାତିଦ୍ରବ୍ୟ ବଳାନାଞ୍ଚ ସାମ୍ୟମେଷାଂ ମୟା ସହ
ମତ୍ପ୍ରଭୁତ୍ୱଫଳଂ ବ୍ରୂହି କଦା କିଂ ତଦ୍ଭବିଷ୍ୟତି । ୪୫ ।

ଏମାନେ ଜାତି, ଅଙ୍ଗପ୍ରତ୍ୟଙ୍ଗ, ବଳ ଏ ସବୁ ଗୁଣରେ ମୋ ସହିତ ସମାନ । କେବଳ ପ୍ରଭୁତ୍ୱରେ ମୁଁ ସେମାନଙ୍କଠାରୁ ଅଧିକ । ତେବେ କୁହ, ମୁଁ ବର୍ତ୍ତମାନ ସେମାନଙ୍କୁ ରକ୍ଷା ନ କଲେ ମୋ ପ୍ରଭୁତ୍ୱର କି ଫଳ ? । ୪୫ । ପୁଣି—

ବିନା ବର୍ତ୍ତନମେବୈତେ ନ ତ୍ୟଜନ୍ତି ମମାନ୍ତିକମ୍
ତନ୍ମେ ପ୍ରାଣବ୍ୟୟେନାଽପି ଜୀବୟୈତାନ୍ ମମାଶ୍ରିତାନ୍ । ୪୬ ।

ଏମାନେ ବେତନ ନ ନେଇ ମଧ୍ୟ ମୋର ସଙ୍ଗ ତ୍ୟାଗ କରନ୍ତି ନାହିଁ । ତେଣୁ ଜୀବନବ୍ୟୟରେ ମଧ୍ୟ ଏମାନଙ୍କୁ ରକ୍ଷା କର । ୪୬ ।

ମାଂସମୂତ୍ରପୁରୀଷାସ୍ଥିପୂରିତେଽତ୍ର କଳେବରେ
ବିନଶ୍ୱରେ ବିହାୟାସ୍ଥାଂ ଯଶଃ ପାଳୟ ମିତ୍ର ମେ । ୪୭ ।

ହେ ମିତ୍ର, ଏ ଶରୀର ମାଂସ, ମୂତ୍ର, ମଳ, ଅସ୍ଥି ଦ୍ୱାରା ପରିପୂର୍ଣ୍ଣ ଓ କ୍ଷଣିକ । ତେଣୁ ଏହି ଶରୀରପ୍ରତି ମମତା ତ୍ୟାଗକରି ଶରଣାଗତମାନଙ୍କୁ ରକ୍ଷାପୂର୍ବକ ଯଶୋଲାଭ କର । ୪୭ । ପୁଣି ଦେଖ—

ଯଦି ନିତ୍ୟମନିତ୍ୟେନ ନିର୍ମଳଂ ମଳବାହିନା
ଯଶଃ କାୟେନ ଲଭ୍ୟେତ ତନ୍ନଲବ୍ଧଂ ଭବେନ୍ନୁ କିମ୍ । ୪୮ ।

ଯଦି ଅନିତ୍ୟ ତଥା ମଳପୂର୍ଣ୍ଣ ଶରୀର ବିନିମୟରେ ନିତ୍ୟ ନିର୍ମଳ ଯଶଃ ଲାଭ କରାଯାଏ, ତେବେ କଅଣ ଅବା ଲାଭ ନ ହେଲା ? ୪୮ । ଯେହେତୁ –

ଶରୀରସ୍ୟ ଗୁଣାନାଞ୍ଚ ଦୂରମତ୍ୟନ୍ତମନ୍ତରମ୍
ଶରୀରଂ କ୍ଷଣବିଧ୍ୱଂସି କଳ୍ପାନ୍ତସ୍ଥାୟିନୋ ଗୁଣାଃ । ୪୯ ।

ଶରୀର ଓ ଗୁଣ ମଧ୍ୟରେ ମହାନ୍ ପ୍ରଭେଦ ଅଛି । ଶରୀର କ୍ଷଣକ ଭିତରେ ଧ୍ୱଂସ ପାଇପାରେ, କିନ୍ତୁ ଯଶଃ କଳ୍ପକାଳ ପର୍ଯ୍ୟନ୍ତ ରହିଥାଏ । ୪୯ ।

ଏହା ଶୁଣି ହିରଣ୍ୟକ ହୃଷ୍ଟ ମନରେ ପୁଲକିତ ହୋଇ କହିଲା, "ହେ ମିତ୍ର ଚିତ୍ରଗ୍ରୀବ, ତୁମ କଥା ଯଥାର୍ଥ । ଆଶ୍ରିତମାନଙ୍କ ପ୍ରତି ତୁମର ଏ ପ୍ରକାର ବାତ୍ସଲ୍ୟ ହେତୁ ତୁମେ ତ୍ରିଭୁବନର ପ୍ରଭୁତ୍ୱପାଇଁ ଯୋଗ୍ୟ ।" ଏହିପରି କହି ହିରଣ୍ୟକ ସବୁ କପୋତଙ୍କର ବନ୍ଧନ କାଟିଦେଲା । ତାହାପରେ ହିରଣ୍ୟକ ସମସ୍ତଙ୍କୁ ଆଦରରେ ପୂଜାକରି

କହିଲା, "ସଖେ ଚିତ୍ରଗ୍ରୀବ, ଏହି ଜାଲବନ୍ଧନ ବିଷୟରେ ନିଜର ଅବିବେକତାରୂପ ଦୋଷକୁ ବିଚାର ନିଜକୁ ଅବଜ୍ଞା କରିବା ଉଚିତ ନୁହେଁ । କାରଣ—

ଯୋଽଧିକାଦ୍ ଯୋଜନଶତାତ୍ ପଶ୍ୟତୀହାମିଷଂ ଖଗଃ
ସ ଏବ ପ୍ରାପ୍ତକାଳସ୍ତୁ ପାଶବନ୍ଧଂ ନ ପଶ୍ୟତି । ୫୦ ।

ଏହି ଜଗତରେ ଯେଉଁ ଶ୍ୟେନପକ୍ଷୀ ଶତଯୋଜନଠାରୁ ଅଧିକ ଦୂରରୁ ମଧ୍ୟ ନିଜର ଆହାରକୁ ଦେଖିପାରେ, ସେହି ଶ୍ୟେନ ମୃତ୍ୟୁକାଳ ଉପସ୍ଥିତ ହେଲେ ସମ୍ମୁଖସ୍ଥ ପାଶବନ୍ଧକୁ ମଧ୍ୟ ଦେଖିପାରେ ନାହିଁ । ୫୦ । ପୁଣି—

ଶଶିଦିବାକରୟୋର୍ଗ୍ରହପୀଡ଼ନଂ
ଗଜଭୁଜଙ୍ଗମୟୋରପି ବନ୍ଧନମ୍
ମତିମତାଞ୍ଚ ବିଲୋକ୍ୟ ଦରିଦ୍ରତାଂ
ବିଧିରହୋ ବଳବାନିତି ମେ ମତିଃ । ୫୧ ।

ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପ୍ରତି ରାହୁଗ୍ରହର ପୀଡ଼ା, ଗଜ ଓ ସର୍ପର ବନ୍ଧନ ଏବଂ ବିଦ୍ୱାନ୍ ଲୋକମାନଙ୍କର ଦାରିଦ୍ର୍ୟ ଦେଖି ମୋର ମନେହୁଏ, ବିଧିହିଁ ବଳବାନ୍ । ୫୧ । ପୁଣି—

ବ୍ୟୋମୈକାନ୍ତବିହାରିଣୋଽପି ବିହଗାଃ ସମ୍ପ୍ରାପ୍ନୁବନ୍ତ୍ୟାପଦଂ
ବଧ୍ୟନ୍ତେ ନିପୁଣୈରଗାଧସଲିଳାନ୍ମତ୍ସ୍ୟାଃ ସମୁଦ୍ରାଦପି ।
ଦୁର୍ନୀତଂ କିମିହାସ୍ତି କିଂ ସୁଚରିତଂ କଃ ସ୍ଥାନଲାଭେ ଗୁଣଃ
କାଳୋହି ବ୍ୟସନପ୍ରସାରିତକରୋ ଗୃହ୍ଣାତି ଦୂରାଦପି । ୫୨ ।

ନିର୍ଜନ ଆକାଶରେ ବିହାର କରିବାକୁ ସମର୍ଥ ପକ୍ଷୀମାନେ ମଧ୍ୟ ବିପଦରେ ପଡ଼ନ୍ତି । ଅଗାଧ ସମୁଦ୍ରଜଳରୁ ମଧ୍ୟ ମତ୍ସ୍ୟମାନେ ଧରାଯାନ୍ତି । ଅତଏବ ଏହି ଜଗତରେ ସୁନୀତି କଅଣ ? ଦୁର୍ନୀତି

କଅଣ ? ଉଚ୍ଚ ସ୍ଥାନ ଲାଭ କରିବାରେ ଫଳ କଅଣ ? କାରଣ, କାଳ (ମୃତ୍ୟୁ) ଆପଦରୂପକ ହସ୍ତକୁ ପ୍ରସାରିତ କରି ଦୂରକୁ ସମସ୍ତଙ୍କୁ ଟାଣି ନିଏ ।'' ୫୨ ।

ଏହିପରି ଆଶ୍ୱାସନା ଦେଇ ଓ ଆତିଥ୍ୟ ପ୍ରଦର୍ଶନ କରି ହିରଣ୍ୟକ ଚିତ୍ରଗ୍ରୀବକୁ ଆଲିଙ୍ଗନ କଲା । ତତ୍ପରେ ପରିବାର ସହିତ ଚିତ୍ରଗ୍ରୀବ ନିଜର ଅଭିଳଷିତ ସ୍ଥାନକୁ ପ୍ରସ୍ଥାନ କଲା ଓ ହିରଣ୍ୟକ ମଧ୍ୟ ନିଜର ଗର୍ତ୍ତରେ ପ୍ରବେଶ କଲା ।

ଯାନି କାନି ଚ ମିତ୍ରାଣି କର୍ତ୍ତବ୍ୟାନି ଶତାନି ଚ
ପଶ୍ୟ ମୂଷିକମିତ୍ରେଣ କପୋତା ମୁକ୍ତବନ୍ଧନାଃ । ୫୩ ।

ମନୁଷ୍ୟ ପକ୍ଷରେ ଶ୍ରେଷ୍ଠ ହେଉ ବା ବଡ଼ ହେଉ ଶତ ଶତ ମିତ୍ର ଥିବା ଉଚିତ । ଦେଖ, ସାମାନ୍ୟ ମୂଷିକଟିଏ ମିତ୍ର ହୋଇଥିବାରୁ ଚିତ୍ରଗ୍ରୀବ ଓ ତାହାର ସହଚର କପୋତମାନେ ବନ୍ଧନରୁ ମୁକ୍ତଲାଭ କଲେ । ୫୩ ।

ଏହାପରେ ଲଘୁପତନକ ଏ ସମସ୍ତ ଘଟନା ଦର୍ଶନ କରି ଆଶ୍ଚର୍ଯ୍ୟ ହୋଇ କହିଲା, ''ହେ ହିରଣ୍ୟକ, ତୁମେ ଧନ୍ୟ । ଏହି ହେତୁରୁ ମୁଁ ତୁମ ସହିତ ମିତ୍ରତା ସ୍ଥାପନ କରିବାକୁ ଇଚ୍ଛା କରୁଅଛି । ତୁମେ ମୋତେ ମିତ୍ରରୂପେ ଗ୍ରହଣ କର ।'' ହିରଣ୍ୟକ ଏହା ଶୁଣି ଗର୍ତ୍ତମଧ୍ୟରୁ କହିଲା, ''ତୁମେ କିଏ ?'' ସେ ଉତ୍ତର କଲା, ''ମୁଁ ଗୋଟିଏ ବାୟସ; ମୋର ନାମ ଲଘୁପତନକ ।'' ହିରଣ୍ୟକ ହସି ହସି କହିଲା, ''ତୁମ ସାଥିରେ ମୋର କିପରି ବନ୍ଧୁତା ହୋଇପାରେ ? ଯେଣୁ—

ଯଦ୍ ଯେନ ଯୁଜ୍ୟତେ ଲୋକେ ବୁଧସ୍ତତ୍ ତେନ ଯୋଜୟେତ୍ ।
ଅହମନ୍ନଂ ଭବାନ୍ ଭୋକ୍ତା କଥଂ ପ୍ରୀତିର୍ଭବିଷ୍ୟତି । ୫୪ ।

ସଂସାରରେ ଯିଏ ଯାହା ସହିତ ମିଳିବାର ଯୋଗ୍ୟ, ବୁଦ୍ଧିମାନ୍ ଲୋକେ ତାକୁ ତାହା ସହିତ ମିଳାଇଥାନ୍ତି । ମୁଁ ମୂଷିକ, ତୋର ଖାଦ୍ୟ; ଆଉ ତୁ କାକ ମୋର ଖାଦକ । ଖାଦ୍ୟଖାଦକ ମଧ୍ୟରେ କପରି ପ୍ରୀତି ହୋଇପାରେ ? ୫୪ । ପୁଣି—

ଭକ୍ଷ୍ୟଭକ୍ଷକୟୋଃ ପ୍ରୀତିର୍ବିପତ୍ତେଃ କାରଣଂ ମତମ୍
ଶୃଗାଳାତ୍ ପାଶବଦ୍ଧୋଽସୌ ମୃଗଃ କାକେନ ରକ୍ଷିତଃ । ୫୫ ।

ଭକ୍ଷ୍ୟ ଓ ଭକ୍ଷକ ମଧ୍ୟରେ ପ୍ରୀତି ବିପତ୍ତିର କାରଣ ବୋଲି ସ୍ୱୀକୃତ । ପାଶବଦ୍ଧ ମୃଗ ଗୋଟିଏ କାକଦ୍ୱାରା କପଟବନ୍ଧୁ ଶୃଗାଳଠାରୁ ଉଦ୍ଧାର ପାଇଥିଲା । ୫୫ ।

ଲଘୁପତନକ ପଚାରିଲା, "ତାହା କପରି ହୋଇଥିଲା ?" ହିରଣ୍ୟକ କହିବାକୁ ଲାଗିଲା—

## କଥା-୩

ମଗଧଦେଶରେ ଚମ୍ପକବତୀ ନାମରେ ଗୋଟିଏ ଅରଣ୍ୟ ଅଛି । ସେହି ଅରଣ୍ୟରେ ଗୋଟିଏ ମୃଗ ଓ ଗୋଟିଏ କାକ ପରସ୍ପର ସ୍ନେହରେ ଆବଦ୍ଧ ହୋଇ ବାସ କରୁଥିଲେ । ମୃଗଟି ବନମଧ୍ୟରେ ସ୍ୱେଚ୍ଛାରେ ଆହାର ବିହାର କରି ହୃଷ୍ଟପୁଷ୍ଟ ହୋଇଥିଲା । ଦିନେ ଗୋଟିଏ ଶୃଗାଳ ତାହାକୁ ଦେଖି ମନେ ମନେ ବିଚାରିଲା, "ଆଃ, କି ଉପାୟ କଲେ ଏହି ହରିଣର କୋମଳ ମାଂସକୁ ଖାଇପାରିବି ? ହେଉ, ଆଗେ ତାହାର ମୋପ୍ରତି ବିଶ୍ୱାସ ଜନ୍ମାଇବାକୁ ହେବ ।"

ଏହିପରି ଚିନ୍ତାକରି ସେ ହରିଣ ଆଡ଼କୁ ଯାଇ କହିଲା, "ମିତ୍ର, ତୁମର ସବୁ କୁଶଳତ ?" ମୃଗ ପଚାରିଲା, "ତୁମେ କିଏ ?" ସେ ଉତ୍ତର କଲା, "ମୁଁ ଗୋଟିଏ ଶୃଗାଳ, ମୋର ନାମ କ୍ଷୁଦ୍ରବୁଦ୍ଧି ।

ଏହି ଅରଣ୍ୟରେ ମୁଁ ଏକାକୀ ବନ୍ଧୁହୀନ ଭାବରେ ମୃତବତ୍ ବାସ କରୁଅଛି । ଏବେ ତୁମକୁ ମିତ୍ରରୂପେ ପାଇ ନବଜୀବନ ଲାଭ କଲାପରି ମନେକରୁଅଛି । ଏବେ ମୁଁ ସର୍ବଦା ତୁମର ଅନୁଚରରୂପେ ରହିବି ।'' ମୃଗ କହିଲା, ''ତାହାହିଁ ହେଉ ।''

ତଦନନ୍ତର ମରୀଚିମାଳୀସୂର୍ଯ୍ୟ ଅସ୍ତ ହୁଅନ୍ତେ ମୃଗ ଓ ଶୃଗାଳ ଦୁହେଁ ଯାକ ମୃଗର ବାସସ୍ଥାନରେ ଉପସ୍ଥିତ ହେଲେ । ସେଠାରେ ଗୋଟିଏ ଚମ୍ପକ ବୃକ୍ଷର ଶାଖାରେ ମୃଗର ଚିରମିତ୍ର ସୁବୁଦ୍ଧି ନାମକ କାକ ବସିଥିଲା । ସେ ଏ ଦୁହିଁଙ୍କୁ ଦେଖି ମୃଗକୁ କହିଲା, ''ସଖେ ଚିତ୍ରାଙ୍ଗ, ଏହି ଦ୍ୱିତୀୟ ପ୍ରାଣୀଟି କିଏ ?'' ମୃଗ ଉତ୍ତର କଲା, ''ଏ ଗୋଟିଏ ଶୃଗାଳ । ସେ ଆମ ସଙ୍ଗେ ବନ୍ଧୁତା ସ୍ଥାପନ କରିବାକୁ ଇଚ୍ଛାକରି ଏଠାକୁ ଆସିଅଛି ।'' କାକ କହିଲା, ''ମିତ୍ର, ହଠାତ୍ ଆସିଥିବା ଅପରିଚିତ ପ୍ରାଣୀ ସଙ୍ଗେ ମିତ୍ରତା କରିବା ଉଚିତ ନୁହେଁ । ତୁମେ ତାକୁ ଡାକି ଆଣି ଭଲ କାମ କରି ନାହଁ । କଥିତ ଅଛି—

ଅଜ୍ଞାତ କୁଳଶୀଳସ୍ୟ ବାସୋ ଦେୟୋ ନ କସ୍ୟଚିତ୍
ମାର୍ଜାରସ୍ୟ ହି ଦୋଷେଣ ହତୋଗୃଧ୍ରୋ ଜରଦ୍‌ଗବଃ । ୫୬ ।

ଯାହାର କୁଳ ଓ ସ୍ୱଭାବ ଜଣା ନଥାଏ, ତାକୁ ଆଶ୍ରୟ ଦେବା ଉଚିତ ନୁହେଁ । ଏହିପରି ଆଶ୍ରୟ ଦେଇଥିବାରୁ ମାର୍ଜାରର ଦୋଷରେ ଜରଦ୍‌ଗବ ମୃତ୍ୟୁମୁଖରେ ପଡ଼ିଥିଲା ।''

ମୃଗ ଓ ଶୃଗାଳ କହିଲେ, ''ସେ କଥାଟି କଅଣ ?''
କାକ (ସୁବୁଦ୍ଧି) କହିବାକୁ ଲାଗିଲା—

## କଥା-୪

ଭାଗୀରଥୀ ନଦୀତଟରେ ଗୃଧ୍ରକୂଟ ନାମକ ପର୍ବତରେ ଗୋଟିଏ ପ୍ରକାଣ୍ଡ ପର୍କଟୀ ବୃକ୍ଷ ଅଛି । ଦୈବ ଦୁର୍ବିପାକରୁ ନଖ ଓ ଚକ୍ଷୁ ହରାଇଥିବା ଗୋଟିଏ ଗୃଧ୍ର ସେହି ବୃକ୍ଷର କୋଟରରେ ବାସ କରୁଥିଲା । ସେହି ବୃକ୍ଷରେ ରହୁଥିବା ପକ୍ଷୀମାନେ ଦୟା କରି ତାହାର ପ୍ରାଣରକ୍ଷା ନିମନ୍ତେ ନିଜ ନିଜ ଆହାରରୁ କିଛି କିଛି ତାକୁ ଦେଉଥିଲେ । ତାହାର ଦ୍ୱାରା ସେ ଜୀବନଧାରଣ କରୁଥିଲା ଓ ସେମାନଙ୍କ ଶାବକମାନଙ୍କୁ ରକ୍ଷା କରୁଥିଲା । ଏକଦା ଦୀର୍ଘକର୍ଣ୍ଣ ନାମକ ଗୋଟିଏ ମାର୍ଜାର ପକ୍ଷୀଶାବକମାନଙ୍କୁ ଖାଇବା ଉଦ୍ଦେଶ୍ୟରେ ସେଠାକୁ ଆସିଲା । ତାହାକୁ ଆସିବାର ଦେଖି ପକ୍ଷୀଶାବକମାନେ ଭୟରେ କାତର ହୋଇ କୋଳାହଳ କଲେ । ସେହି କୋଳାହଳ ଶୁଣି ଜରଦ୍‌ଗବ କହିଲା, "କିଏ ଆସୁଛି ?" ଦୀର୍ଘକର୍ଣ୍ଣ ଜରଦ୍‌ଗବକୁ ଦେଖି ଭୟରେ କହିଲା, "ହାୟ, ମୋର ପ୍ରାଣ ଗଲା । ଏ ନିଶ୍ଚୟ ମୋତେ ମାରି ପକାଇବ । ଅଥବା—

ତାବଦ୍ ଭୟସ୍ୟ ଭେତବ୍ୟଂ ଯାବଦ୍‌ଭୟମନାଗତମ୍
ଆଗତଂ ତୁ ଭୟଂ ବୀକ୍ଷ୍ୟ ନରଃ କୁର୍ଯ୍ୟାଦ୍ ଯଥୋଚିତମ୍ ।୫୭।

ଯେତେବେଳ ପର୍ଯ୍ୟନ୍ତ ଭୟ ଆସିନାହିଁ ସେତେବେଳ ଯାଏ ତାକୁ ଭୟ କରିବା ଉଚିତ; କିନ୍ତୁ ଭୟ ସମ୍ମୁଖରେ ଉପସ୍ଥିତ ହେଲେ ତାକୁ ଦୂର କରିବାପାଇଁ ଯଥୋଚିତ ବ୍ୟବସ୍ଥା କରିବା ଆବଶ୍ୟକ । ୫୭ ।

ବର୍ତ୍ତମାନ ମୁଁ ଏହାର ଅତି ନିକଟରେ ଉପସ୍ଥିତ, ତେଣୁ ପଳାଇଯିବାକୁ ଅକ୍ଷମ । ଅଚ୍ଛା, ଯାହା ହେବାର ହେଉ, ବିଶ୍ୱାସ ଜନ୍ମାଇ ଏହାର ନିକଟକୁ ଯାଏଁ ।" ଏହିପରି ବିଚାରି ସେ ଗୃଧ୍ରର

ନିକଟକୁ ଯାଇ କହିଲା, "ଆର୍ଯ୍ୟ, ଆପଣଙ୍କୁ ପ୍ରଣାମ କରୁଅଛି ।" ଗୃଧ୍ର କହିଲା, "ତୁମେ କିଏ ?" ମାର୍ଜାର ଉତ୍ତର କଲା, "ମୁଁ ଗୋଟିଏ ମାର୍ଜାର ।" ଗୃଧ୍ର କହିଲା "ଶୀଘ୍ର ଏଠାରୁ ପଳାଇଯାଅ । ନୋହିଲେ ମୁଁ ତୁମର ପ୍ରାଣନେବି ।" ମାର୍ଜାର କହିଲା, "ମହାଭାଗ, ମୋର କଥା ଆଗେ ଶୁଣନ୍ତୁ । ତାହାପରେ ମୋତେ ବଧର ଯୋଗ୍ୟ ମନେକଲେ ବଧ କରିବେ । କାରଣ—

ଜାତିମାତ୍ରେଣ କିଂ କଶ୍ଚିଦ୍ ବଧ୍ୟତେ ପୂଜ୍ୟତେ କ୍ୱଚିତ୍
ବ୍ୟବହାରଂ ପରିଜ୍ଞାୟ ବଧ୍ୟଃ ପୂଜ୍ୟୋଽଥବା ଭବେତ୍ । ୫୮ ।

କେବଳ ଜାତି ହେତୁରୁ କଅଣ କାହାରିକୁ ପୂଜା କରାଯାଏ ବା ବଧ କରାଯାଏ କି ? ଆଚରଣ ଅନୁସାରେ କେହି ପୂଜ୍ୟ ହୋଇ ଥାଏ ବା କେହି ବଧ ହୋଇଥାଏ ।" ୫୮ ।

ଗୃଧ୍ର କହିଲା, "ତୁମେ ଏଠାକୁ କାହିଁକି ଆସିଛ କହ ।" ମାର୍ଜାର ଉତ୍ତର କଲା, "ମୁଁ ପ୍ରତ୍ୟହ ସ୍ନାନ କରେଁ; ନିରାମିଷ ଆହାର କରେଁ, ବ୍ରହ୍ମଚର୍ଯ୍ୟ ଓ ଚାନ୍ଦ୍ରାୟଣ ବ୍ରତ ପାଳନ କରି ଏହି ଗଙ୍ଗାନଦୀ କୂଳରେ ବାସ କରୁଅଛି । ପକ୍ଷୀମାନେ ସର୍ବଦା ମୋ ଆଗରେ ଆପଣଙ୍କର ପ୍ରଶଂସାକରି କହନ୍ତି ଯେ ଆପଣ ଧର୍ମଜ୍ଞାନରେ ନିପୁଣ ଏବଂ ପ୍ରୀତି ଓ ବିଶ୍ୱାସର ଆଧାର । ଆପଣ ବିଦ୍ୟାବୃଦ୍ଧ ତଥା ବୟୋବୃଦ୍ଧ; ତେଣୁ ଆପଣଙ୍କ ମୁଖରୁ ଧର୍ମକଥା ଶୁଣିବା ପାଇଁ ଆସିଥିଲି; କିନ୍ତୁ ଆପଣ ଏପରି ଧର୍ମଜ୍ଞ ଯେ ମୋପରି ଅତିଥିକୁ ପ୍ରାଣରେ ମାରି ଦେବାକୁ ଉଦ୍ୟତ ହେଉଅଛନ୍ତି । ଗୃହସ୍ଥର ଧର୍ମ ହେଉଛି—

ଅରାବପ୍ୟୁଚିତଂ କାର୍ଯ୍ୟମାତିଥ୍ୟଂ ଗୃହମାଗତେ
ଛେତ୍ତୁଃ ପାର୍ଶ୍ୱଗତାଂଚ୍ଛାୟାଂ ନୋପସଂହରତେ ଦ୍ରୁମଃ । ୫୯ ।

ଶତ୍ରୁ ମଧ୍ୟ ଗୃହକୁ ଆସିଲେ, ତାହା ପ୍ରତି ଆତିଥ୍ୟ ପ୍ରଦର୍ଶନ କରିବା ଉଚିତ । ଯେଉଁ ଲୋକ ବୃକ୍ଷକୁ ଛେଦନ କରିବାକୁ ଆସିଥାଏ, ତାକୁ ମଧ୍ୟ ବୃକ୍ଷ ଛାୟାଦାନ କରିବାରୁ ବିରତ ହୋଇ ନଥାଏ । ୫୯

ଯଦି ଗୃହରେ ଅନ୍ନ ନ ଥାଏ, ତେବେ ମଧୁର ବାକ୍ୟଦ୍ୱାରା ଅତିଥିକୁ ସତ୍କାର କରିବ । ଆହୁରି କଥିତ ଅଛି—

ତୃଣାନି ଭୂମିରୁଦକଂ ବାକ୍ ଚତୁର୍ଥୀ ଚ ସୂନୃତା
ଏତାନ୍ୟପି ସତାଂ ଗେହେ ନୋଚ୍ଛିଦ୍ୟନ୍ତେ କଦାଚନ । ୬୦ ।

ତୃଣ ନିର୍ମିତ ଆସନ, ଭୂମି, ଜଳ ଓ ମଧୁର ବାକ୍ୟ—ଏ ଚାରୋଟି ସାଧୁଲୋକଙ୍କ ଗୃହରେ ସର୍ବଦା ଅବଶ୍ୟ ରହିଥାଏ । ୬୦ । ପୁନଶ୍ଚ—

ବାଲୋ ବା ଯଦି ବା ବୃଦ୍ଧୋ ଯୁବା ବା ଗୃହମାଗତଃ
ତସ୍ୟ ପୂଜା ବିଧାତବ୍ୟା ସର୍ବସ୍ୟାଭ୍ୟାଗତୋ ଗୁରୁଃ । ୬୧ ।

ବାଳକ ହେଉ, ବୃଦ୍ଧ ହେଉ ବା ଯୁବକ ହେଉ, ଯେକେହି ଗୃହକୁ ଆସିଲେ ସେ ଅତିଥି ଏବଂ ଅତିଥିର ପୂଜା କରିବା ବିଧେୟ । ଅତିଥି ସମସ୍ତଙ୍କର ଗୁରୁତୁଲ୍ୟ ପୂଜନୀୟ । ୬୧ । ପୁନଶ୍ଚ—

ନିର୍ଗୁଣେଷ୍ୱପି ସତ୍ତ୍ୱେଷୁ ଦୟାଂ କୁର୍ବନ୍ତି ସାଧବଃ
ନ ହି ସଂହରତେ ଜ୍ୟୋତ୍ସ୍ନାଂ ଚନ୍ଦ୍ରଶ୍ଚାଣ୍ଡାଳବେଶ୍ମନଃ । ୬୨

ସାଧୁଲୋକେ ଗୁଣହୀନ ପ୍ରାଣୀଙ୍କୁ ମଧ୍ୟ ଦୟା କରିଥାନ୍ତି । ଚନ୍ଦ୍ର ଚଣ୍ଡାଳର ଗୃହ ଉପରେ ମଧ୍ୟ ଜ୍ୟୋତ୍ସ୍ନା ବିତରଣ କରିଥାଏ । ୬୨ ପୁନଶ୍ଚ—

ଅତିଥିର୍ଯସ୍ୟ ଭଗ୍ନାଶୋ ଗୃହାତ୍ ପ୍ରତିନିବର୍ତ୍ତତେ
ସ ତସ୍ମୈ ଦୁଷ୍କୃତଂ ଦତ୍ତ୍ୱା ପୁଣ୍ୟମାଦାୟ ଗଚ୍ଛତି । ୬୩ ।

ଯେଉଁ ଘରୁ ଅତିଥି ନିରାଶ ହୋଇ ଫେରିଯାଏ, ତାର ଗୃହସ୍ଥକୁ ସେହି ଅତିଥି ନିଜର ପାପତକ ଦେଇ ପୁଣ୍ୟ ନେଇ ଚାଲିଯାଏ । ୭୩ ।
ପୁଣି—

ଉତ୍ତମସ୍ୟାପି ବର୍ଣ୍ଣସ୍ୟ ନୀଚୋଽପି ଗୃହମାଗତଃ
ପୂଜନୀୟୋ ଯଥାଯୋଗ୍ୟଂ ସର୍ବଦେବମୟୋଽତିଥିଃ । ୭୪ ।

ନୀଚ ବର୍ଣ୍ଣର ଲୋକ ଅତିଥିଭାବରେ ଉଚ୍ଚ ବର୍ଣ୍ଣର ଲୋକର ଘରକୁ ଆସିଲେ, ତାହାର ମଧ୍ୟ ଯଥୋଚିତ ସତ୍କାର କରିବା ବିଧେୟ । କାରଣ ଅତିଥି ହେଉଛନ୍ତି ସର୍ବଦେବମୟ ।”

ଗୃଧ୍ର କହିଲା, “ମାର୍ଜାର ମାନେ ମାଂସପ୍ରିୟ । ଏଠାରେ ପକ୍ଷୀଶାବକମାନେ ଅଛନ୍ତି । ସେଥିପାଇଁ ମୁଁ ସେପରି କହିଲି ।” ଏହା ଶୁଣି ମାର୍ଜାର ଭୂମି ଓ ତତ୍ପରେ କର୍ଣ୍ଣ ସ୍ପର୍ଶକରି କହିଲା, “ମୁଁ ଧର୍ମଶାସ୍ତ୍ର ଶୁଣି ଶୁଣି ମାଂସାଦି ବିଷୟତୃଷ୍ଣା ତ୍ୟାଗ କରି ଦୁଷ୍କର ଚାନ୍ଦ୍ରାୟଣ ବ୍ରତ ପାଳନ କରୁଅଛି । ଧର୍ମଶାସ୍ତ୍ରମାନଙ୍କରେ ବିଭିନ୍ନ ମତ ମଧ୍ୟରେ ବାଦ ବିବାଦ ଥିଲେହେଁ ‘ଅହିଂସା ପରମ ଧର୍ମ’ ଏ ବିଷୟରେ ସବୁ ଧର୍ମଶାସ୍ତ୍ର ଏକମତ । ଯେହେତୁ—

ସର୍ବହିଂସାନିବୃତ୍ତା ଯେ ନରାଃ ସର୍ବଂସହାଶ୍ଚ ଯେ
ସର୍ବସ୍ୟାଽଶ୍ରୟଭୂତାଶ୍ଚ ତେ ନରାଃ ସ୍ୱର୍ଗଗାମିନଃ । ୭୫ ।

ଯେଉଁ ଲୋକମାନେ କୌଣସି ପ୍ରାଣୀପ୍ରତି ହିଂସା ଆଚରଣ କରନ୍ତି ନାହିଁ, ସୁଖଦୁଃଖ ମାନାପମାନ ସବୁ ସହି ପାରନ୍ତି; ଶରଣାଗତ ଜୀବମାତ୍ରକୁ ଆଶ୍ରୟ ଦିଅନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ୭୫ ।
ପୁଣି—

ଏକ ଏବ ସୁହୃଦ୍ଧର୍ମୋ ନିଧନେଽପ୍ୟନୁଯାତି ଯଃ
ଶରୀରେଣ ସମଂ ନାଶଂ ସର୍ବମନ୍ୟତ୍ତୁ ଗଚ୍ଛତି । ୭୬ ।

ଜଗତରେ ଧର୍ମ ହେଉଛି ଏକମାତ୍ର ବନ୍ଧୁ । କାରଣ ଶରୀର ବିନାଶପ୍ରାପ୍ତ ହେଲେ ଅନ୍ୟ କିଛି ସଙ୍ଗରେ ଯାଏ ନାହିଁ । କେବଳ ଧର୍ମହିଁ ସଙ୍ଗରେ ଯାଏ । ପୁଣି—

ଯୋଽତ୍ତି ଯସ୍ୟ ତଦା ମାଂସମୁଭୟୋଃ ପଶ୍ୟତାଽନ୍ତରମ୍
ଏକସ୍ୟ କ୍ଷଣିକା ପ୍ରୀତିରନ୍ୟଃ ପ୍ରାଣୈର୍ବିମୁଚ୍ୟତେ । ୬୭ ।

ଯିଏ ଅନ୍ୟ ଜୀବର ମାଂସ ଖାଏ ସେହି ଖାଦକ ଓ ଖାଦ୍ୟ ମଧ୍ୟରେ ପ୍ରଭେଦ ଦେଖ । ଗୋଟିଏ ପ୍ରାଣୀ ମାଂସ ଖାଇ କ୍ଷଣିକ ତୃପ୍ତି ଲାଭ କରେ; କିନ୍ତୁ ଅପରପ୍ରାଣୀଟି ଜୀବନ ତ୍ୟାଗ କରେ । ୬୭ ।

ମର୍ତ୍ତବ୍ୟମିତି ଯଦ୍ ଦୁଃଖଂ ପୁରୁଷସ୍ୟୋପଜାୟତେ
ଶକ୍ୟସ୍ତେନାଽନୁମାନେନ ପରୋଽପି ପରିରକ୍ଷିତୁମ୍ । ୬୮ ।

'ଏବେ ମୋତେ ମରିବାକୁ ହେବ' ଏହା ଚିନ୍ତା କଲାବେଳେ ମନୁଷ୍ୟର ଯେଉଁ ଦୁଃଖ ହୁଏ, ଅପରର ମଧ୍ୟ ସେହିପରି ଦୁଃଖ ହେଉଥିବ; ଏହା ବୁଝି ଅନ୍ୟକୁ ରକ୍ଷା କରିବା ଉଚିତ; ହିଂସା କରିବା ଉଚିତ ନୁହେଁ । ୬୮ । ଆହୁରି କହୁଛି ଶୁଣନ୍ତୁ—

ସ୍ୱଚ୍ଛନ୍ଦବନଜାତେନ ଶାକେନାପି ପ୍ରପୂର୍ଯ୍ୟତେ
ଅସ୍ୟ ଦଗ୍‌ଧୋଦରସ୍ୟାଽର୍ଥେ କଃ କୁର୍ଯ୍ୟାତ୍ ପାତକଂ ମହତ୍ । ୬୯

ବନରେ ସ୍ୱତଃ ଜନ୍ମୁଥିବା ଶାକଦ୍ୱାରା ମଧ୍ୟ ଏ ଉଦର ପୂରଣ କରାଯାଇପାରେ । ତେଣୁ ଉଦର ନିମନ୍ତେ କିଏ ଜୀବହିଂସାରୂପକ ମହାପାପ କରିବାକୁ ଯିବ ?" ୬୯ ।

ଏପରି କହିବାଦ୍ୱାରା ଗୃଧ୍ରର ବିଶ୍ୱାସ ଜନ୍ମାଇ ମାର୍ଜାର ବୃକ୍ଷ-କୋଟରରେ ବାସ କଲା ଓ ପ୍ରତ୍ୟେକ ଦିନ କେତୋଟି ପକ୍ଷୀଶାବକ ମାରି କୋଟରକୁ ଆଣି ଖାଇଲା । ଅବଶେଷରେ ଯେଉଁ ପକ୍ଷୀ-

ମାନଙ୍କର ଶାବକକୁ ସେ ଖାଇଥିଲା, ଯେମାନେ ଶୋକରେ ବିଳାପ କରି ଏଣେତେଣେ ପଶ୍ଚରିବାକୁ ଲାଗିଲେ । ମାର୍ଜାର ଏହା ଜାଣିପାରି କୋଟରରୁ ବାହାରି ପଳାଇଗଲା । ପରେ ପକ୍ଷୀମାନେ ଏଣେତେଣେ ଖୋଜି ଖୋଜି ଯେଉଁ କୋଟର ମଧ୍ୟରେ ଶାବକମାନଙ୍କର ଅସ୍ଥି ଦେଖି ପାରିଲେ । ତହୁଁ ପକ୍ଷୀମାନେ ସ୍ଥିର କଲେ, ଏହି ଜରଦ୍‌ଗବ ପକ୍ଷୀଶାବକମାନଙ୍କୁ ଖାଇଅଛି । ତେଣୁ ସେମାନେ ଗୃଧ୍ରକୁ ମାରି-ପକାଇଲେ । ଏହି ହେତୁରୁ ମୁଁ କହୁଥିଲି, ଯାହାର କୁଳ ଓ ସ୍ୱଭାବ ଜଣା ନଥିବ, ତାକୁ ଆଶ୍ରୟ ଦେବା ଅନୁଚିତ ।”

ଏହି କଥା ଶୁଣି ଶୃଗାଳ କ୍ରୁଦ୍ଧ ହୋଇ କାକକୁ କହିଲା, “ମୃଗ ସହିତ ପ୍ରଥମ ସାକ୍ଷାତ ପୂର୍ବରୁ ତୁମେ ମଧ୍ୟ ଅଜ୍ଞାତକୁଳଶୀଳ ଥିଲ । ତେବେ ତୁମ ସହିତ ତାଙ୍କର ସ୍ନେହଭାବ କପରି ଉତ୍ତରୋତ୍ତର ବଢ଼ିବାରେ ଲାଗିଛି ? ଅଥବା—

ଯତ୍ର ବିଦ୍ୱଜ୍ଜନୋ ନାସ୍ତି ଶ୍ଲାଘ୍ୟସ୍ତତ୍ରାଽଲ୍ପଧୀରପି
ନିରସ୍ତପାଦପେ ଦେଶେ ଏରଣ୍ଡୋଽପି ଦ୍ରୁମାୟତେ । ୭୦ ।

ଯେଉଁଠାରେ ବିଦ୍ୱାନ୍ ଲୋକ ନଥାନ୍ତି, ସେଠାରେ ସାମାନ୍ୟ ବୁଦ୍ଧି ଥିବା ଲୋକ ପ୍ରଶଂସାର ପାତ୍ର ହୋଇଥାଏ । ବୃକ୍ଷହୀନ ପ୍ରଦେଶରେ ଏରଣ୍ଡବୃକ୍ଷ (ଗବଗଛ) ମଧ୍ୟ ମହାଦ୍ରୁମ ବୋଲି ବିବେଚିତ ହୁଏ । ୭୦ । ଆହୁରି ମଧ୍ୟ—

ଅୟଂ ନିଜଃ ପରୋବେତି ଗଣନା ଲଘୁଚେତସାମ୍
ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍ । ୭୧ ।

ମିତମନା ଲୋକେ ‘ଇଏ ଆପଣା, ଇଏ ପର’ ଏଭଳି ଭେଦବୁଦ୍ଧି ପ୍ରକାଶ କରିଥାନ୍ତି; କିନ୍ତୁ ଉଦାରମନା ଲୋକେ ସମଗ୍ର ପୃଥିବୀର ଲୋକଙ୍କୁ ନିଜ ପରିବାର ବୋଲି ମନେ କରନ୍ତି । ୭୧ ।

ଏ ମୃଗ ଯେପରି ମୋର ମିତ୍ର, ତୁମେ ମଧ୍ୟ ସେହିପରି ମୋର ମିତ୍ର ।” ମୃଗ କହିଲା, “ଏପରି ନିରର୍ଥକ ବାଦାନୁବାଦରେ କି ଫଳ ? ଆସ ଆମେ ତିନିହେଁ ଏକତ୍ର ଗଳ୍ପ କରି ସୁଖ ଅନୁଭବ କରି ରହିବା । ଯେହେତୁ—

ନ କଶ୍ଚିତ୍ କସ୍ୟଚିନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚିଦ୍‌ରିପୁଃ
ବ୍ୟବହାରେଣ ମିତ୍ରାଣି ଜାୟନ୍ତେ ରିପବସ୍ତଥା । ୭୨ ।

ସ୍ୱଭାବତଃ କେହି କାହାର ମିତ୍ର ନୁହନ୍ତି କି କେହି କାହାର ଶତ୍ରୁ ନୁହନ୍ତି । ବ୍ୟବହାର ଅନୁସାରେ ଲୋକେ ପରସ୍ପରର ମିତ୍ର ହୋଇଥାନ୍ତି କିମ୍ବା ଶତ୍ରୁ ହୋଇଥାନ୍ତି ।” ୭୨ ।

କାକ କହିଲା, “ତାହାହିଁ ହେଉ ।”

ତତ୍ପରଦିନ ପ୍ରାତଃକାଳରେ ତିନିହେଁ ନିଜ ନିଜ ଇଚ୍ଛା ଅନୁସାରେ ବୁଲିବାକୁ ବାହାରିଗଲେ ।

ଏକଦା ଶୃଗାଳ ମୃଗକୁ ଏକାନ୍ତରେ କହିଲା, “ସଖା ମୃଗ, ଏହି ବନର ଏକ ଅଂଶରେ ଗୋଟିଏ ଶସ୍ୟପୂର୍ଣ୍ଣ କ୍ଷେତ୍ର ଅଛି । ମୁଁ ତୁମକୁ ନେଇ ସେହି ସ୍ଥାନଟି ଦେଖାଇ ଦେବି ।”

ମୃଗ ଶସ୍ୟକ୍ଷେତ୍ରଟି ଦେଖିବା ପରେ ପ୍ରତ୍ୟହ ସେଠାକୁ ଯାଇ ଶସ୍ୟ ଖାଇବାକୁ ଲାଗିଲା । କେତେ ଦିନପରେ କ୍ଷେତ୍ରପତି ତାହା ଦେଖିପାରି ସେଠାରେ ଫାଶ ବସାଇଲା । ମୃଗ ପୁନର୍ବାର ସେଠାକୁ ଆସି ଶସ୍ୟ ଖାଉ ଖାଉ ସେହି ଫାଶରେ ଆବଦ୍ଧ ହେଲା । ତହୁଁ ସେ ଚିନ୍ତା କଲା, “ଯମପାଶ ସଦୃଶ ବ୍ୟାଧପାଶରୁ ମିତ୍ର ଛଡ଼ା ଅନ୍ୟ କିଏ ମୋତେ ଉଦ୍ଧାର କରିପାରିବ ?” ଏଥିମଧ୍ୟରେ ଶୃଗାଳ ସେଠାକୁ ଆସି ବିଚାରିଲା—“ମୁଁ ଯେଉଁ କପଟ ଉପାୟ କରିଥିଲି,

ତାହା ଏବେ ସଫଳ ହେଲା । ମୋର ମନୋରଥ ପୂର୍ଣ୍ଣ ମାତ୍ରାରେ ସିଦ୍ଧ ହୋଇଅଛି; କାରଣ ମୃଗକୁ କାଟିବାପରେ ମାଂସ ଓ ରକ୍ତ ଲାଗିଥିବା ତାର ହାଡ଼ଗୁଡ଼ିକ ନିଶ୍ଚୟ ମୋତେ ମିଳିବ । ସେଥିରେ ମୋର ଭୂରିଭୋଜନ ହେବ ।" ଏଣେ ମୃଗ ଶୃଗାଳକୁ ଦେଖିପାରି ହୃଷ୍ଟ ହୋଇ କହିଲା, "ମୋର ଏହି ବନ୍ଧନକୁ ଛିନ୍ନ କରି ଶୀଘ୍ର ମୋତେ ଉଦ୍ଧାର କର । ଯେହେତୁ—

ଆପତ୍ସୁ ମିତ୍ରଂ ଜାନୀୟାଦ୍ ଯୁଦ୍ଧେ ଶୂରମୃଣେ ଶୁଚିମ୍
ଭାର୍ଯ୍ୟା କ୍ଷୀଣେଷୁ ବିତ୍ତେଷୁ ବ୍ୟସନେଷୁ ଚ ବାନ୍ଧବାନ୍ । ୭୩ ।

ଆପଦରେ ମିତ୍ରର, ଯୁଦ୍ଧରେ ବୀରର, ଋଣରେ ସାଧୁତାର, ଧନକ୍ଷୟରେ ପତ୍ନୀର ଓ ଦୁଃଖରେ ବନ୍ଧୁମାନଙ୍କର ପ୍ରକୃତ ପରିଚୟ ମିଳିଥାଏ । ୭୩ । ପୁଣି—

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଳବେ
ରାଜଦ୍ୱାରେ ଶ୍ମଶାନେ ଚ ଯସ୍ତିଷ୍ଠତି ସ ବାନ୍ଧବଃ । ୭୪ ।

ଯେଉଁ ଲୋକେ ଉତ୍ସବ ସମୟରେ ତଥା ବିପଦ ସମୟରେ, ଦୁର୍ଭିକ୍ଷ ସମୟରେ, ରାଷ୍ଟ୍ରବିପ୍ଳବ ସମୟରେ, ରାଜଦ୍ୱାରରେ ଓ ଶ୍ମଶାନରେ ଯଥାଶକ୍ତି ସାହାଯ୍ୟ କରନ୍ତି, ସେହିମାନେହିଁ ପ୍ରକୃତରେ ବନ୍ଧୁ । ୭୪ ।

ଶୃଗାଳ ମୃଗର ଫାଶକୁ ବାରମ୍ବାର ଦେଖି ଚିନ୍ତା କଲା, "ଏ ବନ୍ଧନ ଖୁବ୍ ଦୃଢ଼ ।" ତତ୍ପରେ ପ୍ରକାଶ୍ୟରେ କହିଲା, "ସଖେ, ଏ ଫାଶଟି ସ୍ନାୟୁରେ ନିର୍ମିତ । ଆଜି ରବିବାର ହୋଇଥିବାରୁ ଏହାକୁ କପରି ଦନ୍ତରେ ସ୍ପର୍ଶ କରିବି ? ମିତ୍ର, ଯଦି ମନରେ ଅନ୍ୟ କିଛି ନ ଭାବ, ତେବେ କାଲି ସକାଳେ ମୋତେ ଯାହା କହିବ ନିଶ୍ଚୟ ତାହା କରିବି ।"

ଏହାପରେ ସନ୍ଧ୍ୟାବେଳକୁ କାକ ଦେଖିଲା ଯେ ମୃଗ ବସାକୁ ଫେରିନାହିଁ । ତେଣୁ ଇତସ୍ତତଃ ଅନ୍ୱେଷଣ କରି ସେ ମୃଗକୁ ପାଶବଦ୍ଧ ଅବସ୍ଥାରେ ଦେଖି କହିଲା, "ସଖା, ଏ କଅଣ ?" ମୃଗ ଉତ୍ତର କଲା, "ବନ୍ଧୁର ବାକ୍ୟ ଲଙ୍ଘନ କରିବାର ଫଳ ହେଉଛି ଏହା ! କଥିତ ଅଛି—

ସୁହୃଦାଂ ହିତକାମାନାଂ ଯଃ ଶୃଣୋତି ନ ଭାଷିତମ୍
ବିପତ୍ ସନ୍ନିହିତା ତସ୍ୟ ସ ନରଃ ଶତ୍ରୁନନ୍ଦନଃ । ୭୫ ।

ଯିଏ ହିତକାମୀ ବନ୍ଧୁମାନଙ୍କର କଥା ଶୁଣେ ନାହିଁ, ବିପଦ ଶୀଘ୍ର ତାର ନିକଟବର୍ତ୍ତୀ ହୁଏ ଓ ତାର ବିପଦରେ ଶତ୍ରୁମାନେ ଆନନ୍ଦ ଲାଭ କରନ୍ତି ।" ୭୫ ।

କାକ କହିଲା, "ସେ ଧୂର୍ତ୍ତ ଶୃଗାଳ କାହିଁ ?" ମୃଗ ଉତ୍ତର କଲା, "ମୋର ମାଂସ ଖାଇବାକୁ ଆଶା କରି ଏହିଠାରେ ଅଛି ।" କାକ କହିଲା, "ମିତ୍ର, ମୁଁ ପୂର୍ବରୁ କହିଥିଲି—

ଅପରାଧୋ ନ ମେଽସ୍ତୀତି ନୈତଦ୍‌ବିଶ୍ୱାସ କାରଣମ୍
ବିଦ୍ୟତେ ହି ନୃଶଂସେଭ୍ୟୋ ଭୟଂ ଗୁଣବତାମପି । ୭୬ ।

ମୁଁ କୌଣସି ଅପରାଧ କରିନାହିଁ; ତେଣୁ କେହି ମୋର ଅନିଷ୍ଟ କରିବେ ନାହିଁ—ଏପରି ବିଶ୍ୱାସ କରିବା ଉଚିତ ନୁହେଁ । କାରଣ ନିଷ୍ଠୁର ଲୋକମାନେ ନିର୍ଦ୍ଦୋଷ ଗୁଣୀ ଲୋକଙ୍କର ମଧ୍ୟ ଅନିଷ୍ଟ କରିଥାନ୍ତି । ୭୬ । ପୁଣି—

ଦୀପନିର୍ବାଣଗନ୍ଧଞ୍ଚ ସୁହୃଦ୍‌ବାକ୍ୟମରୁନ୍ଧତୀମ୍
ନ ଜିଘ୍ରନ୍ତି ନ ଶୃଣ୍ୱନ୍ତି ନ ପଶ୍ୟନ୍ତି ଗତାୟୁଷଃ । ୭୭ ।

ଯାହାର ମରଣକାଳ ନିକଟ ହୁଏ, ସେ ଦୀପଲିଭିବା ଗନ୍ଧ ବାରି ପାରେ ନାହିଁ, ବନ୍ଧୁର ବାକ୍ୟ ଶୁଣେ ନାହିଁ ଓ ଅରୁନ୍ଧତୀ ନକ୍ଷତ୍ରକୁ ଦେଖିପାରେ ନାହିଁ । ୭୭ ।

ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦନମ୍
ବର୍ଜୟେତ୍ ତାଦୃଶଂ ମିତ୍ରଂ ବିଷକୁମ୍ଭଂ ପୟୋମୁଖମ୍ । ୭୮ ।

ଯିଏ ସମ୍ମୁଖରେ ପ୍ରିୟ କଥା କହେ, କିନ୍ତୁ ପରୋକ୍ଷରେ କାର୍ଯ୍ୟ ନଷ୍ଟ କରେ, ସେପରି ବନ୍ଧୁକୁ ପୟୋମୁଖ ବିଷକୁମ୍ଭ ସଦୃଶ ତ୍ୟାଗ କରିବା ଉଚିତ ।" ୭୮ ।

ତହୁଁ କାକ ଦୀର୍ଘ ନିଶ୍ୱାସ ପକାଇ କହିଲା, "ଆରେ ଧୂର୍ତ୍ତ ଶୃଗାଳ, ତୁ ପାପିଷ୍ଠ କଅଣ ନ କଲୁ ? ଯେଣୁ—

ସଂଲାପିତାନାଂ ମଧୁରୈର୍ବଚୋଭି-
ର୍ମିଥ୍ୟୋପଚାରୈଶ୍ଚ ବଶୀକୃତାନାମ୍
ଆଶାବତାଂ ଶ୍ରଦ୍ଦଧତାଂ ଚ ଲୋକେ
କିମର୍ଥିନାଂ ବଞ୍ଚୟିତବ୍ୟମସ୍ତି । ୭୯ ।

ସଂସାରରେ ମଧୁର ବଚନଦ୍ୱାରା ପ୍ରଲୋଭିତ, ମିଥ୍ୟା ଉପଚାର ଦ୍ୱାରା ବଶୀଭୂତ, ଶ୍ରଦ୍ଧାଳୁ ଓ ଆଶାବାନ୍ ଅର୍ଥୀଲୋକଙ୍କୁ ପ୍ରତାରିତ କରିବା କଅଣ ଉଚିତ ? ୭୯ । ପୁଣି—

ଉପକାରିଣି ବିଶ୍ରବ୍ଧେ ଶୁଦ୍ଧମତୌ ଯଃ ସମାଚରତି ପାପମ୍
ତଂ ଜନମସତ୍ୟସନ୍ଧଂ ଭଗବତି ବସୁଧେ ! କଥଂ ବହସି ? ୮୦ ।

ହେ ଭଗବତି ବସୁଧେ ! ଯିଏ ଉପକାରୀ, ବିଶ୍ୱସ୍ତ ଓ ଶୁଦ୍ଧ ବ୍ୟବହାରଶୀଳ ଲୋକପ୍ରତି ବିଶ୍ୱାସଘାତକତା-ରୂପକ ପାପକାର୍ଯ୍ୟ କରି-ପାରେ ସେଭଳି ଲୋକକୁ କିପରି ଧରି ରଖିଛ ? ୮୦ ।

ଦୁର୍ଜନେନ ସମଂ ସଖ୍ୟଂ ବୈରଞ୍ଚାପି ନ କାରୟେତ୍
ଉଷ୍ଣୋ ଦହତି ଚାଙ୍ଗାରଃ ଶୀତଃ କୃଷ୍ଣାୟତେ କରମ୍ । ୮୧ ।

ଅଙ୍ଗାର ଉତ୍ତପ୍ତ ଅବସ୍ଥାରେ ପୋଡ଼ିଦିଏ, ଶୀତଳ ଅବସ୍ଥାରେ ହାତକୁ କଳା କରିଦିଏ । ତେଣୁ ଦୁର୍ଜନ ସହିତ ମିତ୍ରତା କମ୍ବା ଶତ୍ରୁତା କୌଣସିଟି ଉଚିତ ନୁହେଁ । ୮୧ । ଅଥବା ଦୁର୍ଜନର ସ୍ୱଭାବ ହେଉଛି ମଶାର ସ୍ୱଭାବ ପରି ।

ପ୍ରାକ୍ ପାଦୟୋଃ ପତତି ଖାଦତି ପୃଷ୍ଠମାଂସମ୍
କର୍ଣ୍ଣେ କଳଂ କିମପି ରୌତି ଶନୈର୍ବିଚିତ୍ରମ୍
ଛିଦ୍ରଂ ନିରୂପ୍ୟ ସହସା ପ୍ରବିଶତ୍ୟଶଙ୍କଃ
ସର୍ବଂ ଖଳସ୍ୟ ଚରିତଂ ମଶକଃ କରୋତି । ୮୨ ।

ଯେପରି ମଶକ ପ୍ରଥମେ ପାଦତଳେ ପଡ଼େ, ପରେ ପିଠିରେ ବସି ମାଂସ ଖାଏ, କାନ ପାଖରେ ଧୀରେ ଧୀରେ କିଛି କପଟ କଥା କହେ, ଛିଦ୍ର ସ୍ଥିର କରି ହଠାତ୍ ପ୍ରବେଶ କରେ; ଖଳ ଲୋକ ମଧ୍ୟ ଠିକ୍ ସେହିପରି କରେ । ୮୨ ।

ଦୁର୍ଜନଃ ପ୍ରିୟବାଦୀ ଚ ନୈତଦ୍ୱିଶ୍ୱାସକାରଣମ୍
ମଧୁ ତିଷ୍ଠତି ଜିହ୍ୱାଗ୍ରେ ହୃଦି ହଳାହଳଂ ବିଷମ୍ । ୮୩ ।

ଦୁର୍ଜନ ପ୍ରିୟବାକ୍ୟ କହୁଥିଲେ ମଧ୍ୟ ତାକୁ ବିଶ୍ୱାସ କରିବା ଉଚିତ ନୁହେଁ । ତାର ଜିଭ ଅଗରେ ମଧୁ ଥାଏ; କିନ୍ତୁ ହୃଦୟରେ ହଳାହଳ ବିଷ ପୂରିଥାଏ । ୮୩ ।

ଅନନ୍ତର ପ୍ରଭାତ କାଳରେ କ୍ଷେତପତି ହାତରେ ଠେଙ୍ଗା ଧରି ସେହି ସ୍ଥାନକୁ ଆସିଲା ବେଳେ କାକ ତାହାକୁ ଦେଖିଲା । ତହୁଁ ସେ ମୃଗକୁ କହିଲା, " ସଖେ, ତୁମେ ପବନରେ ପେଟକୁ ଫୁଲାଇ ଗୋଡ଼ଗୁଡ଼ିକୁ ସିଧା କରି, ନିଜକୁ ମଲାପରି ଛଳନା କର । ମୁଁ

ଥଣ୍ଟରେ ତୁମର ଆଖିକୁ ଖୁମ୍ପି ଲାପରି କରିବ । ମୁଁ ଯେତେବେଳେ ରାବିବ, ସେତେବେଳେ ତୁମେ ଉଠି ପଳାଇଯିବ ।” କାକର କଥା ଅନୁସାରେ ମୃଗ ମଲାପରି ପଡ଼ି ରହିଲା । ମୃଗଟି ମରି ପଡ଼ିଥିବାର ଅନୁମାନ କରି କ୍ଷେତ୍ରପତି ଆନନ୍ଦିତ ହୋଇ କହିଲା, “ଆଃ, ଏଇଟା ଆପେ ଆପେ ମରିଯାଇଛି ।” ଏହା କହି ସେ ମୃଗକୁ ବନ୍ଧନରୁ ଫିଟାଇ ଦେଇ ଫାଶଦଉଡ଼ିକୁ ଏକତ୍ର କରିବାକୁ ଉଦ୍ୟତ ହେଲା । କ୍ଷେତ୍ରପତି ମୃଗ ନିକଟରୁ ଟିକିଏ ଦୂରକୁ ଯିବାମାତ୍ରେ କାକ ରାବିଉଠିଲା ଓ ତାହା ଶୁଣି ମୃଗ ଅତି ଶୀଘ୍ର ଉଠି ପଳାଇଲା । କ୍ଷେତ୍ରପତି କ୍ରୋଧରେ ତାହାକୁ ଲକ୍ଷ୍ୟ କରି ଲଠିଟି ଫିଙ୍ଗିଲା; ମାତ୍ର ତାହା ମୃଗଦେହରେ ନ ବାଜି ଶୃଗାଳଦେହରେ ବାଜିବାରୁ ତାହାର ମୃତ୍ୟୁ ହେଲା । ସେଥିପାଇଁ କଥିତ ଅଛି—

> ତ୍ରିଭିର୍ବର୍ଷୈସ୍ତ୍ରିଭିର୍ମାସୈସ୍ତ୍ରିଭିଃ ପକ୍ଷୈସ୍ତ୍ରିଭିର୍ଦିନୈଃ
> ଅତ୍ୟୁତ୍କଟୈଃ ପାପପୁଣ୍ୟୈରିହୈବ ଫଳମଶ୍ନୁତେ । ୮୪ ।

ଅତି ଉତ୍କଟ ପାପ ବା ପୁଣ୍ୟର ଫଳ ଏହି ଜନ୍ମରେ ତିନି ବର୍ଷରେ ଅଥବା ତିନି ମାସରେ ଅଥବା ତିନି ପକ୍ଷରେ ଅଥବା ତିନି ଦିନରେ ଫଳଥାଏ । ୮୪ । ଏହି ହେତୁରୁ ମୁଁ କହୁଥିଲି ଯେ ଭକ୍ଷ୍ୟ ଓ ଭକ୍ଷକ ମଧ୍ୟରେ ପ୍ରୀତି ଅନୁଚିତ ।

( ମୃଗବାୟସ କଥା ସମାପ୍ତ )

କାକ ପୁନର୍ବାର କହିଲା—

> ଭକ୍ଷିତେନାଽପି ଭବତା ନାଽହାରୋ ମମ ପୁଷ୍କଳଃ
> ତ୍ୱୟି ଜୀବତି ଜୀବାମି ଚିତ୍ରଗ୍ରୀବ ଇବାଽନଘ । ୮୫ ।

ହେ ନିଷ୍ପାପ ମୂଷିକରାଜ, ତୁମକୁ ଭୋଜନ କଲେ ମୋର ଉଦର ପୂର୍ତ୍ତି ହେବ ନାହିଁ । କିନ୍ତୁ ତୁମେ ବଞ୍ଚି ରହିଥିଲେ ମୁଁ ଚିତ୍ରଗ୍ରୀବ ପରି ଆନନ୍ଦ ଅନୁଭବ କରି ବଞ୍ଚି ରହିଥିବି । ୮୫ । ପୁଣି—

ତିରଶ୍ଚାମପି ବିଶ୍ୱାସୋ ଦୃଷ୍ଟଃ ପୁଣ୍ୟୈକକର୍ମଣାମ୍
ସତାଂ ହି ସାଧୁଶୀଳତ୍ୱାତ୍ ସ୍ୱଭାବୋ ନ ନିବର୍ତ୍ତତେ । ୮୬ ।

ଧାର୍ମିକ ପଶୁ ପ୍ରଭୃତି ଇତରପ୍ରାଣୀଙ୍କଠାରେ ମଧ୍ୟ ବିଶ୍ୱାସ କରିବା ଉଚିତ; କାରଣ ଯାହାର ସ୍ୱଭାବ ଭଲ, ତାର ସେହି ସତ୍ସ୍ୱଭାବ କେବେହେଲେ ପରିବର୍ତ୍ତିତ ହୁଏ ନାହିଁ । ୮୬ । ପୁଣି—

ସାଧୋଃ ପ୍ରକୋପିତସ୍ୟାପି ମନୋନାୟାତି ବିକ୍ରିୟାମ୍
ନ ହି ତାପୟିତୁଂ ଶକ୍ୟଂ ସାଗରାମ୍ଭସ୍ତୃଣୋଲ୍କୟା । ୮୭ ।

କ୍ରୋଧର କାରଣ ଥିଲେହେଁ ସତ୍‌ଲୋକଙ୍କର ହୃଦୟରେ ବିକାର ଜାତ ହୁଏ ନାହିଁ । ଦୃଷ୍ଟାନ୍ତସ୍ୱରୂପ, ତୃଣର ଅଗ୍ନିଦ୍ୱାରା ସାଗରର ଜଳ ଉଷ୍ମ ହୋଇଯାଏ ନାହିଁ । ୮୭ ।

ହିରଣ୍ୟକ କହିଲା, "ତୁମେ ଚପଳ । ଚପଳ ପ୍ରାଣୀ ସହିତ ପ୍ରୀତି ସ୍ଥାପନ କରିବା ଆଦୌ ଉଚିତ ନୁହେଁ । କଥିତ ଅଛି—

ମାର୍ଜାରୋ ମହିଷୋ ମେଷଃ କାକଃ କାପୁରୁଷସ୍ତଥା
ବିଶ୍ୱାସାତ୍ ପ୍ରଭବନ୍ତ୍ୟେତେ ବିଶ୍ୱାସସ୍ତତ୍ର ନ ହିତଃ । ୮୮ ।

ମାର୍ଜାର, ମହିଷ, ମେଷ, କାକ ଓ କାପୁରୁଷ ଏମାନଙ୍କୁ ବିଶ୍ୱାସ କଲେ ଏମାନେ କେବଳ ଅନିଷ୍ଟ କରିବାକୁ ସମର୍ଥ ହୁଅନ୍ତି । ଏମାନଙ୍କୁ ବିଶ୍ୱାସ କରିବାଦ୍ୱାରା କଦାପି ମଙ୍ଗଳ ହୁଏ ନାହିଁ । ୮୮ ।

ଆହୁରିମଧ୍ୟ ତୁମେ ଆମର ଶତ୍ରୁଜାତୀୟ । ତେଣୁ ଶତ୍ରୁ ସହିତ ସନ୍ଧି (ମିତ୍ରତା) କରିବା ଉଚିତ ନୁହେଁ । ପୁଣି କଥିତ ଅଛି—

ଶତ୍ରୁଣା ନ ହି ସନ୍ଦଧ୍ୟାତ୍ ସୁଶ୍ଲିଷ୍ଟେନାପି ସନ୍ଧିନା
ସୁତପ୍ତମପି ପାନୀୟଂ ଶମୟତ୍ୟେବ ପାବକମ୍ । ୮୯ ।

ଶତ୍ରୁ ସହିତ ସୁଦୃଢ଼ ସନ୍ଧି କଲେ ମଧ୍ୟ ତାକୁ ଘନିଷ୍ଠରୂପେ ବିଶ୍ୱାସ କରିବା କଦାପି ଉଚିତ ନୁହେଁ । ଦୃଷ୍ଟାନ୍ତସ୍ୱରୂପ, ଅଗ୍ନିଦ୍ୱାରା ଉତପ୍ତ ଜଳ ଅଗ୍ନିକୁ ନିର୍ବାପିତ କରିଥାଏ । ତେଣୁ ସନ୍ଧିଦ୍ୱାରା ଆବଦ୍ଧ ଶତ୍ରୁ ମଧ୍ୟ ଅନିଷ୍ଟ କରିପାରେ । ୮୯ ।

ଦୁର୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟୟାଽଲଙ୍କୃତୋଽପି ସନ୍
ମଣିନା ଭୂଷିତଃ ସର୍ପଃ କିମସୌ ନ ଭୟଙ୍କରଃ । ୯୦ ।

ଦୁର୍ଜନ ବିଦ୍ୱାନ୍ ହୋଇଥିଲେ ମଧ୍ୟ ତାକୁ ତ୍ୟାଗ କରିବା ଉଚିତ । ସର୍ପ ମଣିଦ୍ୱାରା ଭୂଷିତ ହୋଇଥିଲେ ହେଁ ସେ କଅଣ ଭୟଙ୍କର ନୁହେଁ ? ୯୦ ।

ଯଦଶକ୍ୟଂ ନ ତଚ୍ଛକ୍ୟଂ ଯଚ୍ଛକ୍ୟଂ ଶକ୍ୟମେବ ତତ୍
ନୋଦକେ ଶକଟଂ ଯାତି ନ ଚ ନୌର୍ଗଚ୍ଛତି ସ୍ଥଳେ । ୯୧ ।

ଯେପରି ଜଳ ଉପରେ ଶକଟ ଯାଇପାରେ ନାହିଁ କିମ୍ବା ସ୍ଥଳଭାଗ ଉପରେ ନୌକା ଯାଇପାରେ ନାହିଁ, ସେହିପରି ଯେଉଁ କାର୍ଯ୍ୟ ସାଧନ କରିବା ଅସମ୍ଭବ ତାହା ସାଧିତ ହୋଇ ପାରେ ନାହିଁ; ପୁଣି ଯାହା ସାଧନ କରିବା ସମ୍ଭବପର, ତାହା ସାଧିତ ହୋଇଥାଏ । ୯୧ । ପୁଣି—

ମହତାଽପ୍ୟର୍ଥସାରେଣ ଯୋ ବିଶ୍ୱସିତି ଶତ୍ରୁଷୁ
ଭାର୍ଯ୍ୟାସୁ ଚ ବିରକ୍ତାସୁ ତଦନ୍ତଂ ତସ୍ୟ ଜୀବନମ୍ । ୯୨ ।

ବିଶେଷ ପ୍ରୟୋଜନବଶତଃ ଯେଉଁ ଲୋକ ଶତ୍ରୁଠାରେ ଓ ସ୍ନେହହୀନା ସ୍ତ୍ରୀଠାରେ ବିଶ୍ୱାସକରେ, ଶେଷରେ ସେହି ବିଶ୍ୱାସ-ହେତୁରୁ ତାର ପ୍ରାଣନାଶ ହୁଏ । ୯୨ ।

ଲଘୁପତନକ କହିଲା, "ମୁଁ ତୁମର ସବୁ କଥା ଶୁଣିଲି । ତଥାପି ମୋର ସଂକଳ୍ପ ହେଉଛି, ତୁମ ସହିତ ମିତ୍ରତା କରିବି । ଯଦି ତାହା ହୋଇ ନ ପାରେ ତେବେ ତୁମ ଦ୍ୱାରଦେଶରେ ଅନଶନ କରି ପ୍ରାଣ ହରାଇ ଦେବି । ଯେହେତୁ—

ମୃଦ୍‌ଘଟବତ୍ ସୁଖଭେଦ୍ୟୋ ଦୁଃସନ୍ଧାନଶ୍ଚ ଦୁର୍ଜନୋ ଭବତି
ସୁଜନସ୍ତୁ କନକଘଟବତ୍ ଦୁର୍ଭେଦ୍ୟଶ୍ଚାଶୁସନ୍ଧେୟଃ । ୯୩ ।

ଦୁର୍ଜନ ମାଟିପାତ୍ର ପରି ସହଜେ ଭାଙ୍ଗି ଯାଇପାରେ ଓ ଥରେ ଭାଙ୍ଗିଗଲେ ଆଉ କଦାପି ଯୋଡ଼ି ହୁଏ ନାହିଁ; କିନ୍ତୁ ସାଧୁ ଲୋକ ସୁବର୍ଣ୍ଣ ଘଟ ପରି ଅତି କଷ୍ଟରେ ଭାଙ୍ଗେ ଓ ସହଜରେ ଯୋଡ଼ି ହୋଇଯାଏ । ୯୩ । ପୁଣି—

ଦ୍ରବତ୍ୱାତ୍ ସର୍ବଲୋହାନାଂ ନିମିତ୍ତାତ୍ ମୃଗପକ୍ଷିଣାମ୍
ଭୟାଲ୍ଲୋଭାଚ୍ଚ ମୂର୍ଖାଣାଂ ସଙ୍ଗତଂ ଦର୍ଶନାତ୍ ସତାମ୍ । ୯୪ ।

ରୌପ୍ୟ କାଞ୍ଚନାଦି ଧାତୁମାନଙ୍କର ମିଳନ ତରଳତ୍ୱ ଗୁଣ ହେତୁରୁ ହୋଇଥାଏ; ଭୋଜନାଦି କାରଣରୁ ପଶୁପକ୍ଷୀମାନଙ୍କର ମିଳନ ଘଟିଥାଏ; ଭୟହେତୁରୁ ବା ଲୋଭହେତୁରୁ ମୂର୍ଖମାନଙ୍କର ମିଳନ ହୋଇଥାଏ; କିନ୍ତୁ ସାଧୁମାନଙ୍କର ମିଳନ ଦର୍ଶନମାତ୍ରେ ହିଁ ଘଟିଥାଏ । ୯୪ । ପୁଣି—

ନାରିକେଳସମାକାରା ଦୃଶ୍ୟନ୍ତେ ହି ସୁହୃଜ୍ଜନାଃ
ଅନ୍ୟେ ବଦରିକାକାରା ବହିରେବ ମନୋହରାଃ । ୯୫ ।

ନାରିକେଳ ପରି ସଜ୍ଜନମାନଙ୍କର ବାହାର କଠିନ ଓ ଭିତର ମଧୁର; କିନ୍ତୁ ଦୁର୍ଜନମାନେ ବଦରିକା (ବରକୋଳି) ପରି ।

ସେମାନଙ୍କର ବାହାରଟି ମନୋହର, କିନ୍ତୁ ଭିତର ଅତି କଠୋର । ୯୫ । ଅତଏବ ମୁଁ ସାଧୁଜନଙ୍କର ମଙ୍ଗଳ କାମନା କରୁଅଛି । କଥିତ ଅଛି—

ସ୍ନେହଚ୍ଛେଦେଽପି ସାଧୂନାଂ ଗୁଣାଃ ନାଽୟାନ୍ତି ବିକ୍ରିୟାମ୍
ଭଙ୍ଗେଽପି ହି ମୃଣାଳାନାମନୁବଧ୍ନନ୍ତି ତନ୍ତବଃ । ୯୬ ।

ସାଧୁଲୋକଙ୍କର ସ୍ନେହ ତୁଟିଗଲେ ମଧ୍ୟ ସେମାନଙ୍କର ଗୁଣର ବିକୃତି ( ପରିବର୍ତ୍ତନ ) ଘଟେ ନାହିଁ । ଅର୍ଥାତ୍ ସେମାନଙ୍କର ସୁଗୁଣ ଦୁର୍ଗୁଣ ହୋଇଯାଏ ନାହିଁ । ପଦ୍ମର ମୃଣାଳ ଭାଙ୍ଗିଗଲେ ମଧ୍ୟ ତାହା ଭିତରେ ଥିବା ତନ୍ତୁ ସେଥିରୁ ଅଲଗା ହୋଇଯାଏ ନାହିଁ । ୯୬ । ପୁଣି—

ଶୁଚିତ୍ୱଂ ତ୍ୟାଗିତା ଶୌର୍ଯ୍ୟଂ ସାମାନ୍ୟଂ ସୁଖଦୁଃଖୟୋଃ
ଦାକ୍ଷିଣ୍ୟଞ୍ଚାଽନୁରକ୍ତିଶ୍ଚ ସତ୍ୟତା ଚ ସୁହୃଦ୍‌ଗୁଣାଃ । ୯୭ ।

ପବିତ୍ରତା, ଦାନଶୀଳତା, ବୀରତ୍ୱ, ସୁଖ ତଥା ଦୁଃଖରେ ସମତା, ଉଦାରତା, ଅନୁରାଗ ଓ ସତ୍ୟତା—ଏଗୁଡ଼ିକ ହେଉଛି ମିତ୍ରର ଗୁଣ । ୯୭ ।ତୁମେ ଏହି ସମସ୍ତ ଗୁଣରେ ବିମଣ୍ଡିତ । ତୁମ ବିନା ଏପରି ମିତ୍ର କେଉଁଠାରେ ପାଇବି ?” ଏହି ସବୁ କଥା ଶୁଣି ହିରଣ୍ୟକ ଗର୍ତ୍ତମଧ୍ୟରୁ ବାହାରକୁ ଆସି କହିଲା, “ତୁମର ଏପରି ବଚନାମୃତ ପାନକରି ମୁଁ ଆପ୍ୟାୟିତ ହେଲି । କଥିତ ଅଛି—

ଘର୍ମାର୍ତ୍ତେ ନ ତଥା ସୁଶୀତଳଜଳୈଃ ସ୍ନାନଂ ନ ମୁକ୍ତାବଳୀ
ନ ଶ୍ରୀଖଣ୍ଡବିଲେପନଂ ସୁଖୟତି ପ୍ରତ୍ୟଙ୍ଗମପ୍ୟର୍ପିତମ୍ ।
ପ୍ରୀତ୍ୟୈ ସଜ୍ଜନଭାଷିତଂ ପ୍ରଭବତି ପ୍ରାୟୋ ଯଥା ଚେତସଃ
ସଦ୍‌ଯୁକ୍ତ୍ୟା ଚ ପରିଷ୍କୃତଂ ସୁକୃତିନାମାକୃଷ୍ଟିମନ୍ତ୍ରୋପମମ୍ ।୯୮ ।

ସୁନ୍ଦର ମାତ୍ରମୟ ସୁକ୍ତଦ୍ୱାରା ଅର୍ଥପୂର୍ଣ୍ଣ, ବଶୀକରଣ ମନ୍ତ୍ରସଦୃଶ ଓଜସ୍ୱୀ, ସୁହୃଦ୍‌ବାକ୍ୟ ଚିତ୍ତକୁ ଯେପରି ପ୍ରସନ୍ନ କରେ, ଘର୍ମାକ୍ତ ଜନକୁ ସୁଶୀତଳ ଜଳ ସ୍ନାନ, ମୁକ୍ତାହାର କମ୍ବା ଅଙ୍ଗପ୍ରତ୍ୟଙ୍ଗରେ ଚନ୍ଦନବିଲେପନ ସେପରି ପ୍ରସନ୍ନ କରିପାରେ ନାହିଁ । ୯୮ । ପୁଣି—

ରହସ୍ୟଭେଦୋ ଯାଚ୍ଞା ଚ ନୈଷ୍ଠୁର୍ଯ୍ୟଂ ଚଳଚିତ୍ତତା
କ୍ରୋଧୋ ନିଃସତ୍ୟତା ଦ୍ୟୂତମେତନ୍ମିତ୍ରସ୍ୟ ଦୂଷଣମ୍ । ୯୯ ।

ରହସ୍ୟଭେଦ ( ଗୁପ୍ତ କଥା ଅନ୍ୟତ୍ର ପ୍ରକାଶ କରିବା ), ଧନାଦି ଯାଚ୍ଞା, ନିଷ୍ଠୁରତା, ଚଳଚିତ୍ତତା (ଚପଳତା), କ୍ରୋଧ, ଅସତ୍ୟ କଥନ, ଦ୍ୟୂତକ୍ରୀଡ଼ା, ଏ ସବୁ ମିତ୍ରର ଦୂଷଣ ଅଟେ । ୯୯ ।

ଏହି ସବୁ ଦୋଷ ମଧ୍ୟରୁ ଗୋଟିଏ ହେଲେ ତୁମଠାରେ ଦେଖାଯାଉନାହିଁ । ଯେହେତୁ—

ପଟୁତ୍ୱଂ ସତ୍ୟବାଦିତ୍ୱଂ କଥାଯୋଗେନ ବୁଧ୍ୟତେ
ଅସ୍ତବ୍ଧତ୍ୱମଚାପଲ୍ୟଂ ପ୍ରତ୍ୟକ୍ଷେଣାଽବଗମ୍ୟତେ । ୧୦୦ ।

ବାକ୍‌ପଟୁତା ଓ ସତ୍ୟବାଦିତା, ଏ ଦୁଇଟି ଗୁଣ କଥାବାର୍ତ୍ତାରୁ ଜଣାପଡ଼େ; ଉଦ୍ଧତ ଓ ଅଚଞ୍ଚଳତା ଗୁଣ ଦୁଇଟି ପ୍ରତ୍ୟକ୍ଷ ଜଣାପଡ଼େ । ( ତେଣୁ ତୁମେ ମିତ୍ର ହେବାର ଯୋଗ୍ୟ ) । ୧୦୦ । ପୁନଶ୍ଚ—

ଅନ୍ୟଥୈବ ହି ସୌହାର୍ଦ୍ଦଂ ଭବେତ୍ ସ୍ୱଚ୍ଛାନ୍ତରାତ୍ମନଃ
ପ୍ରବର୍ତ୍ତତେଽନ୍ୟଥା ବାଣୀ ଶାଠ୍ୟୋପହତଚେତସଃ । ୧୦୧ ।

ଯେଉଁମାନଙ୍କର ଅନ୍ତର ନିର୍ମଳ, ସେମାନଙ୍କର ମୈତ୍ରୀ ଏକ ପ୍ରକାର ହୋଇଥାଏ । ଆଉରି ମଧ୍ୟ ଧୂର୍ତ୍ତ (ଶଠ) ମାନଙ୍କର କଥା ଭିନ୍ନ ପ୍ରକାର । ୧୦୧ ।

ମନସ୍ୟନ୍ୟଦ୍ ବଚସ୍ୟନ୍ୟଦ୍ କର୍ମଣ୍ୟନ୍ୟଦ୍ ଦୁରାତ୍ମନାମ୍
ମନସ୍ୟେକଂ ବଚସ୍ୟେକଂ କର୍ମଣ୍ୟେକଂ ମହାତ୍ମନାମ୍ । ୧୦୨ ।

ଦୁରାତ୍ମାମାନଙ୍କର ମନରେ ଗୋଟାଏ କିଛି ଥାଏ, ବାକ୍ୟରେ ଅନ୍ୟ କିଛି ଥାଏ ଓ କାର୍ଯ୍ୟରେ ଅନ୍ୟ କିଛି ଥାଏ; କିନ୍ତୁ ମହାପୁରୁଷମାନଙ୍କର ହୃଦୟରେ ଯାହା ଥାଏ ତାହାହିଁ ବାକ୍ୟରେ କହନ୍ତି ଓ କାର୍ଯ୍ୟରେ ତାହାହିଁ କରନ୍ତି ।" ୧୦୨ ।

"ତୁମର ଯାହା ଇଚ୍ଛା ତାହାହିଁ ହେଉ" ଏହା କହି ହିରଣ୍ୟକ ମିତ୍ରତା କରି ବିଭିନ୍ନ ପ୍ରକାର ଖାଦ୍ୟଦ୍ୱାରା ବାୟସକୁ ସନ୍ତୁଷ୍ଟ କରି ଗର୍ତ୍ତମଧ୍ୟରେ ପ୍ରବେଶ କଲା । ବାୟସ ମଧ୍ୟ ନିଜ ସ୍ଥାନକୁ ଚାଲିଗଲା । ସେହିଦିନଠାରୁ ଦୁହେଁଯାକ ପରସ୍ପର ଆହାର ପ୍ରଦାନ, କୁଶଳ ସମାଚାର ପ୍ରଶ୍ନ ଓ ବିଶ୍ରାମ କଥାବାର୍ତ୍ତାରେ କିଛି କିଛି ସମୟ କଟାଇବାକୁ ଲାଗିଲେ । ଦିନେ ଲଘୁପତନକ ହିରଣ୍ୟକକୁ କହିଲା, "ସଖେ, ଏଠାରେ କାକର ଉପଯୋଗୀ ଆହାର ମିଳିବା କଷ୍ଟକର ହେଲାଣି । ତେଣୁ ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଯିବାକୁ ଇଚ୍ଛା କରୁଅଛି ।" ହିରଣ୍ୟକ କହିଲା—

ସ୍ଥାନଭ୍ରଷ୍ଟା ନ ଶୋଭନ୍ତେ ଦନ୍ତାଃ କେଶାନଖାନରାଃ
ଇତି ବିଜ୍ଞାୟ ମତିମାନ୍ ସ୍ୱସ୍ଥାନଂ ନ ପରିତ୍ୟଜେତ୍ । ୧୦୩ ।

ଦନ୍ତ, କେଶ, ନଖ ଓ ନର, ଏମାନେ ସ୍ୱସ୍ଥାନରୁ ବିଚ୍ୟୁତ ହେଲେ ଶୋଭା ପାଆନ୍ତିନାହିଁ । ଏହା ଜାଣି ବୁଦ୍ଧିମାନ୍ ଲୋକ ନିଜର ବାସସ୍ଥାନ ତ୍ୟାଗ କରିବା ଉଚିତ ନୁହେଁ । ୧୦୩ ।

କାକ କହିଲା, "ମିତ୍ର, କେବଳ କାପୁରୁଷମାନେ ଏପରି କହିଥାନ୍ତି । ଯେହେତୁ—

ସ୍ଥାନମୁତ୍ସୃଜ୍ୟ ଗଚ୍ଛନ୍ତି ସିଂହାଃ ସତ୍ପୁରୁଷାଗଜାଃ
ତତ୍ରୈବ ନିଧନଂ ଯାନ୍ତି କାକାଃ କାପୁରୁଷାମୃଗାଃ । ୧୦୪ ।

ସିଂହ, ସତ୍ପୁରୁଷ ଓ ଗଜ, ଏମାନେ ସ୍ୱସ୍ଥାନ ତ୍ୟାଗ କରି ଅନ୍ୟତ୍ର ସ୍ୱଚ୍ଛନ୍ଦରେ ରହନ୍ତି; କିନ୍ତୁ କାକ, କାପୁରୁଷ ଓ ମୃଗ ଏମାନେ ସ୍ୱସ୍ଥାନରେ ପ୍ରାଣତ୍ୟାଗ କରନ୍ତି ପଛକେ ଅନ୍ୟତ୍ର ଯାଆନ୍ତି ନାହିଁ । ୧୦୪। ପୁଣି—

କୋ ବୀରସ୍ୟ ମନସ୍ୱିନଃ ସ୍ୱବିଷୟଃ
କୋ ବା ବିଦେଶଃ ସ୍ମୃତଃ
ଯଂ ଦେଶଂ ଶ୍ରୟତେ ତମେବ କୁରୁତେ
ବାହୁପ୍ରତାପାର୍ଜ୍ଜିତମ୍
ଯତ୍ ଦଂଷ୍ଟ୍ରାନଖଲାଙ୍ଗୁଳପ୍ରହରଣଃ
ସିଂହୋ ବନଂ ଗାହତେ
ତସ୍ମିନ୍ନେବ ହତଦ୍ୱିପେନ୍ଦ୍ରରୁଧିରୈ-
ସ୍ତୃଷ୍ଣା ଛିନତ୍ତ୍ୟାତ୍ମନଃ । ୧୦୫ ।

ମନସ୍ୱୀ ବୀରପୁରୁଷର ସ୍ୱଦେଶ କଅଣ ? ବିଦେଶ କଅଣ ? ସେ ଯେଉଁ ସ୍ଥାନକୁ ଆଶ୍ରୟ କରେ, ବାହୁବଳରେ ତାହାକୁ ନିଜର କରିନିଏ । ଦେଖ—ଦନ୍ତ, ନଖ, ଲାଙ୍ଗୁଳ ଏହି ହେଉଛି ସିଂହର ଅସ୍ତ୍ର । ଏହାକୁ ନେଇ ସେ ଯେଉଁ ବନକୁ ଯାଏ, ସେଠାରେ ନିଜ ବଳରେ ଗଜାଦିଙ୍କୁ ବଧ କରି ସେମାନଙ୍କର ରକ୍ତମାଂସରେ ନିଜର ତୃଷ୍ଣା (ଉଦରଜ୍ୱାଳା) ନିବାରଣ କରେ ।.୧୦୫ ।

ହିରଣ୍ୟକ କହିଲି, "ମିତ୍ର, କେଉଁଠାକୁ ଯିବ ? କଥିତ ଅଛି—

ଚଳତ୍ୟେକେନ ପାଦେନ ତିଷ୍ଠତ୍ୟେକେନ ବୁଦ୍ଧିମାନ୍
ନାଽସମୀକ୍ଷ୍ୟ ପରଂ ସ୍ଥାନଂ ପୂର୍ବମାୟତନଂ ତ୍ୟଜେତ୍ । ୧୦୬ ।

ବୁଦ୍ଧିମାନ୍ ମନୁଷ୍ୟ ଗୋଟିଏ ପାଦରେ ଚାଲେ ଓ ଅନ୍ୟ ପାଦରେ ନିଜକୁ ସ୍ଥିର ରଖେ । ଅର୍ଥାତ୍ ସମ୍ମୁଖକୁ ଦେଖି ଚାଲେ । ତେଣୁ ପରବର୍ତ୍ତୀ ସ୍ଥାନକୁ ଉତ୍ତମରୂପେ ପରୀକ୍ଷା ନ କରି ସ୍ୱସ୍ଥାନ ତ୍ୟାଗ କରିବା ଉଚିତ ନୁହେଁ ।" ୧୦୬ ।

କାକ କହିଲା, "ମିତ୍ର ହିରଣ୍ୟକ, ଗୋଟିଏ ସୁନ୍ଦର ସ୍ଥାନ ନିରୂପଣ କରିଅଛି ।" ହିରଣ୍ୟକ ପଚାରିଲା, "କିପରି ସ୍ଥାନଟିଏ ?" ବାୟସ କହିଲା, "ଦଣ୍ଡକାରଣ୍ୟରେ କର୍ପୂରଗୌର ନାମରେ ଗୋଟିଏ ପୁଷ୍କରିଣୀ ଅଛି । ଯେଉଁଠାରେ ମୋର ବହୁ ଦିନର ବନ୍ଧୁ ମନ୍ଥରନାମକ ପରମଧାର୍ମିକ କଚ୍ଛପ ବାସ କରେ । ଶୁଣ ମିତ୍ର—

ପରୋପଦେଶେ ପାଣ୍ଡିତ୍ୟଂ ସର୍ବେଷାଂ ସୁକରଂ ନୃଣାମ୍
ଧର୍ମେ ସ୍ୱୀୟମନୁଷ୍ଠାନଂ କସ୍ୟଚିତ୍ତୁ ମହାତ୍ମନଃ । ୧୦୭ ।

ଅନ୍ୟକୁ ଉପଦେଶ ଦେବାରେ ପାଣ୍ଡିତ୍ୟ ଦେଖାଇବା ଯେ କୌଣସି ଲୋକ ପକ୍ଷରେ ଖୁବ୍ ସହଜ; କିନ୍ତୁ କେହି ଜଣେ ଜଣେ ମହାପୁରୁଷ ନିଜର ଉପଦେଶ ଅନୁସାରେ ଧର୍ମାଚରଣ କରିଥାନ୍ତି । ୧୦୭ ।

ସେହି ମନ୍ଥର ମୋତେ ବିବିଧ ଖାଦ୍ୟଦ୍ରବ୍ୟ ଦେଇ ସମ୍ବର୍ଦ୍ଧନା କରିବେ ।" ତହୁଁ ହିରଣ୍ୟକ କହିଲା, "ତୁମେ ଯେବେ ଯିବ, ତେବେ ମୁଁ ଏଠାରେ ରହି କଅଣ କରିବି ? ଯେହେତୁ—

ଯସ୍ମିନ୍ ଦେଶେ ନ ସମ୍ମାନୋ ନ ବୃତ୍ତିର୍ନ ଚ ବାନ୍ଧବଃ
ନ ଚ ବିଦ୍ୟାଗମଃ କଶ୍ଚିତ୍ ତଂ ଦେଶଂ ପରିବର୍ଜୟେତ୍ ।୧୦୮

ଯେଉଁ ଦେଶରେ ରହିଲେ ସମ୍ମାନ ମିଳେ ନାହିଁ, ଜୀବିକା ଉପାର୍ଜନର ଉପାୟ ମିଳେ ନାହିଁ, ଯେଉଁଠାରେ ବନ୍ଧୁବାନ୍ଧବ ନଥାନ୍ତି, କୌଣସି ବିଦ୍ୟାଶିକ୍ଷା ହୁଏ ନାହିଁ, ସେ ଦେଶକୁ ପରିତ୍ୟାଗ କରିବା ଉଚିତ । ୧୦୮ । ପୁଣି—

ଧନିକଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟେତ୍ । ୧୦୯ ।

ଧନିକ, ଶ୍ରୋତ୍ରିୟ ବ୍ରାହ୍ମଣ, ରାଜା, ନଦୀ ଓ ବୈଦ୍ୟ—ଏ ପାଞ୍ଚଟି ଯେଉଁ ସ୍ଥାନରେ ନଥାନ୍ତି ସେଠାରେ ବାସ କରିବା ଅନୁଚିତ । ୧୦୯ । ପୁଣି—

ଲୋକଯାତ୍ରା ଭୟଂ ଲଜ୍ଜା ଦାକ୍ଷିଣ୍ୟଂ ତ୍ୟାଗଶୀଳତା
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ନ କୁର୍ଯ୍ୟାତ୍ ତତ୍ର ସଂସ୍ଥିତମ୍ । ୧୧୦ ।

ଯେଉଁଠାରେ ଜୀବନଯାତ୍ରାର ପନ୍ଥା ନ ଥାଏ, ଭୟ ନ ଥାଏ, ଲଜ୍ଜା ନ ଥାଏ, ଉଦାରତା ନ ଥାଏ ଓ ତ୍ୟାଗଶୀଳତା ନ ଥାଏ ସେଠାରେ ମଧ୍ୟ ବାସ କରିବା ଅନୁଚିତ । ୧୧୦ । ପୁଣି—

ତତ୍ର ମିତ୍ର ! ନ ବସ୍ତବ୍ୟଂ ଯତ୍ର ନାସ୍ତି ଚତୁଷ୍ଟୟମ୍
ଋଣଦାତା ଚ ବୈଦ୍ୟଶ୍ଚ ଶ୍ରୋତ୍ରିୟଃ ସଜଳା ନଦୀ । ୧୧୧ ।

ଋଣଦାତା, ସୁଚିକିତ୍ସକ, ବେଦଜ୍ଞ ବ୍ରାହ୍ମଣ ଓ ସୁଜଳା ନଦୀ—ଏ ଚାରୋଟି ଯେଉଁଠାରେ ନ ଥାନ୍ତି, ସେଠାରେ ବାସ କରିବା ଅନୁଚିତ । ୧୧୧ ।

ତେଣୁ ମୋତେ ମଧ୍ୟ ସେଠାକୁ ନେଇ ଚାଲ ।” ବାୟସ କହିଲା, “ତାହାହିଁ କରିବାଉ ।” ତତ୍ପରେ ବାୟସ ମିତ୍ର ସହିତ ମଧୁର ଆଳାପ କରି କରି ସେହି ପୁଷ୍କରିଣୀତଟରେ ଉପସ୍ଥିତ

ହେଲା । ମନ୍ଥର ଦୂରରୁ ବନ୍ଧୁ ଲଘୁପତନକକୁ ଦେଖିପାରି ଜଳରୁ ଉଠି ତାହାର ଓ ମୂଷିକର ଯଥାବିଧି ଅତିଥିସତ୍କାର କଲା । ଯେହେତୁ—

ବାଳୋ ବା ଯଦ୍ଵା ବୃଦ୍ଧୋ ଯୁବା ବା ଗୃହମାଗତଃ
ତସ୍ୟ ପୂଜା ବିଧାତବ୍ୟା ସର୍ବସ୍ୟାଽଭ୍ୟାଗତୋ ଗୁରୁଃ । ୧୧୨ ।

ବାଳକ ହୁଅନ୍ତୁ, ବୃଦ୍ଧ ହୁଅନ୍ତୁ ବା ଯୁବକ ହୁଅନ୍ତୁ, ଯେକୌଣସି ଅତିଥି ଗୃହକୁ ଆସିଲେ ତାଙ୍କର ଉପଯୁକ୍ତ ପୂଜା କରିବା ଆବଶ୍ୟକ; କାରଣ ଅଭ୍ୟାଗତମାନେ ଗୁରୁତୁଲ୍ୟ ଅଟନ୍ତି । ୧୧୨ ।

ଗୁରୁରଗ୍ନିର୍ଦ୍ଵିଜାତୀନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ
ପତିରେକୋ ଗୁରୁଃ ସ୍ତ୍ରୀଣାଂ ସର୍ବସ୍ୟାଽଭ୍ୟାଗତୋ ଗୁରୁଃ । ୧୧୩ ।

ଅଗ୍ନି ଦ୍ଵିଜମାନଙ୍କର ଗୁରୁ, ବ୍ରାହ୍ମଣ ଚାରି ବର୍ଣ୍ଣର ଗୁରୁ, ପତିହିଁ ସ୍ତ୍ରୀମାନଙ୍କର ଗୁରୁ; ଅଭ୍ୟାଗତ ସର୍ବର ଗୁରୁତୁଲ୍ୟ ପୂଜନୀୟ । ୧୧୩ । ପୁନଶ୍ଚ—

ଉତ୍ତମସ୍ୟାପି ବର୍ଣ୍ଣସ୍ୟ ନୀଚୋଽପି ଗୃହମାଗତଃ
ପୂଜନୀୟୋ ଯଥାଯୋଗ୍ୟଂ ସର୍ବଦେବମୟୋଽତିଥିଃ । ୧୧୪ ।

ନୀଚ ବର୍ଣ୍ଣର ଲୋକ ଉଚ୍ଚ ବର୍ଣ୍ଣର ଲୋକଙ୍କ ଗୃହକୁ ଆସିଲେ ତାଙ୍କୁ ମଧ୍ୟ ଯଥାଯୋଗ୍ୟ ସତ୍କାର କରିବା ବିଧେୟ; କାରଣ ଅତିଥି ସର୍ବଦେବ ସ୍ଵରୂପ । ୧୧୪ ।

ବାୟସ କହିଲା; "ସଖେ ମନ୍ଥର, ମୋର ଏହି ସଙ୍ଗୀଙ୍କର ବିଶେଷ ଭାବରେ ସତ୍କାର କର, କାରଣ ସେ ହେଉଛନ୍ତି ଧର୍ମ କାର୍ଯ୍ୟରେ ଅଗ୍ରଣୀ, କାରୁଣ୍ୟ ରସର ରତ୍ନାକରସ୍ଵରୂପ ମୂଷିକରାଜ ହିରଣ୍ୟକ । ସର୍ପରାଜ ଶେଷଦେବ ତାଙ୍କର ସହସ୍ର ଜିହ୍ଵାରେ ମଧ୍ୟ ଏହାଙ୍କ ଗୁଣର ପ୍ରଶଂସା କରି ପାରିବେ ନାହିଁ !"

ଏହା କହିସାରି ବାୟସ ଚିତ୍ରଗ୍ରୀବ ଉପାଖ୍ୟାନ ବର୍ଣ୍ଣନା କଲା । ତହୁଁ ମନ୍ଥର ଅତି ଆଦରରେ ହିରଣ୍ୟକକୁ ପୂଜା କରି କହିଲା, "ହେ ସୌମ୍ୟ, ଆପଣଙ୍କର ନିର୍ଜନବନକୁ ଆସିବାର କାରଣ କହନ୍ତୁ ।" ହିରଣ୍ୟକ କହିଲା, "କହୁଛି ଶୁଣ—

## କଥା-୫

ଚମ୍ପକନାମକ ନଗରୀରେ ସନ୍ନ୍ୟାସୀମାନଙ୍କର ଏକ ଆଶ୍ରମ ଅଛି । ସେଠାରେ ଚୂଡ଼ାକର୍ଣ୍ଣ ନାମରେ ଜଣେ ସନ୍ନ୍ୟାସୀ ଥିଲେ । ସେ ଭୋଜନାବଶିଷ୍ଟ ଭିକ୍ଷାନ୍ନକୁ ଭିକ୍ଷାପାତ୍ରରେ ପୂରାଇ ପାତ୍ରଟିକୁ କାନ୍ଥରେ ଥିବା ଗୋଟିଏ ହକାଠିଆରେ (ନାଗଦନ୍ତରେ) ରଖିଦେଇ ଶୋଉଥିଲେ । ମୁଁ ପ୍ରତିଦିନ ଉପରକୁ ଡେଇଁପଡ଼ି ସେହି ଅନ୍ନକୁ ଖାଉଥିଲି । ଥରେ ଚୂଡ଼ାକର୍ଣ୍ଣଙ୍କର ବୀଣାକର୍ଣ୍ଣ ନାମକ ଜଣେ ପ୍ରିୟବନ୍ଧୁ ସେଠାକୁ ଆସିଥିଲେ । ତାଙ୍କ ସହିତ ନାନା କଥାରେ ରତ ରହିଥିଲେହିଁ ଚୂଡ଼ାକର୍ଣ୍ଣ ମୋତେ ଭୟ ଦେଖାଇବା ପାଇଁ ଖଣ୍ଡିଏ ଦଦରା ବାଉଁଶ ବାଡ଼ିକୁ ତଳେ ପିଟୁଥାନ୍ତି । ସେ ଏପରି କରୁଥିବାର ଦେଖି ବୀଣାକର୍ଣ୍ଣ ପଚାରିଲେ, "ମିତ୍ର, ତୁମେ କାହିଁକି ମୋ କଥାରେ କାନ ନ ଦେଇ ଅନ୍ୟମନସ୍କ ହେଉଛ ? ଯେହେତୁ—

ମୁଖଂ ପ୍ରସନ୍ନଂ ବିମଳା ଚ ଦୃଷ୍ଟିଃ
କଥାନୁରାଗୋ ମଧୁରା ଚ ବାଣୀ
ସ୍ନେହୋଽଧିକଃ ସମ୍ଭ୍ରମଦର୍ଶନଞ୍ଚ
ସଦାନୁରକ୍ତସ୍ୟ ଜନସ୍ୟ ଲକ୍ଷଣମ୍ । ୧୧୫ ।

ମୁଖର ପ୍ରସନ୍ନତା, ନିର୍ମଳ ଦୃଷ୍ଟି, କଥାରେ ଅନୁରାଗ, ଭାଷାର ମଧୁରତା, ଚକ୍ଷୁର ସ୍ନେହ, ଆଗ୍ରହପୂର୍ଣ୍ଣ ଦୃଷ୍ଟିପାତ—ଏଗୁଡ଼ିକ ହେଉଛି ସଦାନୁରକ୍ତ ମିତ୍ରର ଲକ୍ଷଣ । ୧୧୫ ।

ଅଦୃଷ୍ଟିଦାନଂ କୃତପୂର୍ବ ନାଶନ-
ମମାନନଂ ଦୁଶ୍ଚରିତାନୁକୀର୍ତ୍ତନମ୍
କଥାପ୍ରସଙ୍ଗେନ ଚ ନାମବିସ୍ମୃତି-
ର୍ବିରକ୍ତଭାବସ୍ୟ ଜନସ୍ୟ ଲକ୍ଷଣମ୍ । ୧୧୬ ।

ମିତ୍ରପ୍ରତି ଦୃଷ୍ଟି ନ ଦେବା, ପୂର୍ବ ଉପକାରକୁ ଅସ୍ୱୀକାର କରିବା, ଅବମାନନା, କେବଳ ଦୁଶ୍ଚରିତର ଅନୁକୀର୍ତ୍ତନ, କଥା-ପ୍ରସଙ୍ଗରେ ନାମର ବିସ୍ମରଣ —ଏଗୁଡ଼ିକ ମନୁଷ୍ୟର ବିରକ୍ତଭାବର ପରିଚାୟକ ।” ୧୧୬ ।

ଚୂଡ଼ାକର୍ଣ୍ଣ କହିଲେ, “ଭଦ୍ର, ମୁଁ ତୁମ କଥାରେ ବିରକ୍ତ ହୋଇ ନାହିଁ; କିନ୍ତୁ ଦେଖ, ଏଇ ମୂଷିକ ମୋର କିପରି କ୍ଷତି କରୁଛି ! ସେ ସର୍ବଦା ଉପରକୁ ଡେଇଁ ମୋର ଭିକ୍ଷାନ୍ନକୁ ଖାଇ-ଯାଉଅଛି ।”

ବୀଣାକର୍ଣ୍ଣ କାନ୍ଥର ଖିଲାଠିଆ (ନାଗଦନ୍ତ)କୁ ଚାହିଁ କହିଲେ, “ମୂଷିକର ବଳ ସାମାନ୍ୟ । ସେ କିପରି ଏତେ ଉଚ୍ଚକୁ ଡେଇଁ ପାରୁଛି ? ଏଥିର ନିଶ୍ଚୟ କିଛି କାରଣ ଥିବ ।” କିଛି ସମୟ ଚିନ୍ତା-କରି ସନ୍ନ୍ୟାସୀ ବୀଣାକର୍ଣ୍ଣ ପୁଣି କହିଲେ, “ଧନର ବାହୁଲ୍ୟ ଏହାର କାରଣ ବୋଲି ମନେ ହେଉଅଛି । ଯେହେତୁ—

ଧନବାନ୍ ବଳବାଂଲ୍ଲୋକେ ସର୍ବଃ ସର୍ବତ୍ର ସର୍ବଦା
ପ୍ରଭୁତ୍ୱଂ ଧନମୂଳଂ ହି ରାଜ୍ଞାମପ୍ୟୁପଜାୟତେ । ୧୧୭ ।

ସକଳ ଧନବାନ୍ ଲୋକ ଏହି ସଂସାରରେ ସର୍ବଦା ସର୍ବତ୍ର ବଳବାନ୍ ହୋଇଥାନ୍ତି । କାରଣ ରାଜାଙ୍କର ପ୍ରଭୁତ୍ୱ ମଧ୍ୟ ଏହି ଧନରୁ ଜନ୍ମିଥାଏ ।" ୧୧୭ ।

ତହୁଁ ସେ ଖଣ୍ଡେ ଆଣି ଗର୍ତ୍ତକୁ ଖୋଳି ମୋର ଚିରସଞ୍ଚିତ ଧନକୁ ନେଇଗଲେ । ତହୁଁ ମୁଁ ଦିନକୁ ଦିନ ଶକ୍ତିହୀନ ଓ ଉତ୍ସାହହୀନ ହୋଇ ନିଜର ଆହାର ସଂଗ୍ରହ କରିବାକୁ ଅକ୍ଷମ ହୋଇ ପଡ଼ିଲି । ଏହିପରି ଅବସ୍ଥାରେ ଭୟରେ ଧୀରେ ଧୀରେ ମୁଁ ଯାଉଥିବାବେଳେ ଚୂଡ଼ାକର୍ଣ୍ଣ ମୋତେ ଦେଖି କହିଲେ,—

ଧନେନ ବଲବାଂଲ୍ଲୋକେ ଧନାଦ୍ଭବତି ପଣ୍ଡିତଃ
ପଶ୍ୟୈନଂ ମୂଷିକଂ ପାପଂ ସ୍ୱଜାତିସମତାଂ ଗତମ୍ । ୧୧୮ ।

ମନୁଷ୍ୟ ଧନଦ୍ୱାରା ବଳବାନ୍ ହୁଏ । ଧନରୁ ଲୋକ ପଣ୍ଡିତ ହୁଏ । ଏ ଅଧମ ମୂଷିକକୁ ଦେଖ । ଧନ ଚାଲିଯିବାରୁ ସେ ଏବେ ଅନ୍ୟ ମୂଷିକମାନଙ୍କ ପରି ହୋଇଗଲାଣି । ୧୧୮ । ପୁଣି—

ଅର୍ଥେନ ତୁ ବିହୀନସ୍ୟ ପୁରୁଷସ୍ୟାଲ୍ପମେଧସଃ
କ୍ରିୟାଃ ସର୍ବା ବିନଶ୍ୟନ୍ତି ଗ୍ରୀଷ୍ମେ କୁସରିତୋ ଯଥା । ୧୧୯ ।

ଯେପରି ଗ୍ରୀଷ୍ମକାଳରେ କ୍ଷୁଦ୍ରନଦୀର ଜଳ ଶୁଖିଯାଏ, ସେହିପରି ଅର୍ଥହୀନ ଓ ବୁଦ୍ଧିହୀନ ଲୋକର ସକଳକାର୍ଯ୍ୟ ବିନଷ୍ଟ ହୁଏ । ୧୧୯ । ପୁଣି—

ଯସ୍ୟାର୍ଥାସ୍ତସ୍ୟ ମିତ୍ରାଣି ଯସ୍ୟାର୍ଥାସ୍ତସ୍ୟ ବାନ୍ଧବାଃ
ଯସ୍ୟାର୍ଥାଃ ସ ପୁମାଂଲ୍ଲୋକେ ଯସ୍ୟାର୍ଥାଃ ସ ହି ପଣ୍ଡିତଃ ।୧୨୦।

ସଂସାରରେ ଯାହାର ଧନ ଥାଏ, ତାହାର ଅନେକ ମିତ୍ର ହୁଅନ୍ତି, ଧନୀଲୋକକୁ ବହୁତ ବନ୍ଧୁ ମିଳନ୍ତି । ଯାହାର ଧନ ଥାଏ,

ସେ ମହାନ୍ ପୁରୁଷ ବୋଲି ଗଣ୍ୟ ହୁଏ । ଯାହା ପାଖରେ ଧନ ଥାଏ, ସେ ପଣ୍ଡିତ ବୋଲି ପରିଚିତ ହୁଏ । ୧୨୦ । ପୁଣି—

ଅପୁତ୍ରସ୍ୟ ଗୃହଂ ଶୂନ୍ୟଂ ସନ୍ମିତ୍ରରହିତସ୍ୟ ଚ
ମୂର୍ଖସ୍ୟ ଚ ଦିଶଃ ଶୂନ୍ୟାଃ ସର୍ବଶୂନ୍ୟା ଦରିଦ୍ରତା । ୧୨୧ ।

ଯିଏ ପୁତ୍ରହୀନ ତାର ଗୃହଶୂନ୍ୟ, ସତ୍‌ମିତ୍ରହୀନ ତଥା ମୂର୍ଖ ଲୋକର ଚତୁର୍ଦ୍ଦିଗ ଶୂନ୍ୟ; କିନ୍ତୁ ଦରିଦ୍ରକୁ ସବୁ ଶୂନ୍ୟ ଦେଖାଯାଏ । ୧୨୧ । ପୁଣି—

ଦାରିଦ୍ର୍ୟାନ୍ମରଣାଦ୍‌ବାପି ଦାରିଦ୍ର୍ୟମବରଂ ସ୍ମୃତମ୍
ଅଳ୍ପକ୍ଳେଶେନ ମରଣଂ ଦାରିଦ୍ର୍ୟମତି ଦୁଃସହମ୍ । ୧୨୨ ।

ଦାରିଦ୍ର୍ୟ ଓ ମରଣ ଏ ଦୁଇଟି ମଧ୍ୟରେ ଦାରିଦ୍ର୍ୟହିଁ ହୀନତର; କାରଣ ଅଳ୍ପ ଯନ୍ତ୍ରଣାରେ ମରଣ ହୁଏ; କିନ୍ତୁ ଦାରିଦ୍ର୍ୟ ଜୀବନଯାକ ଦୁଃସହ ଯନ୍ତ୍ରଣା ଦେଇଥାଏ । ୧୨୨ ।

ତାନୀନ୍ଦ୍ରିୟାଣ୍ୟବିକଳାନି ତଦେବ ନାମ
ସା ବୁଦ୍ଧିରପ୍ରତିହତା ବଚନଂ ତଦେବ
ଅର୍ଥୋଷ୍ମଣା ବିରହିତଃ ପୁରୁଷଃ ସ ଏବ
ହ୍ୟନ୍ୟଃ କ୍ଷଣେନ ଭବତୀତି ବିଚିତ୍ରମେତତ୍ । ୧୨୩ ।

ଧନ ଥିବା ଅବସ୍ଥାରେ ପୁରୁଷର ଯେଉଁ ସତେଜ ଇନ୍ଦ୍ରିୟ, ଯେଉଁ ନାମ, ଯେଉଁ ଅପ୍ରତିହତ ବୁଦ୍ଧି ଓ ଯେଉଁ ବାକ୍‌ଶକ୍ତି ଥାଏ, ଧନହୀନ ଅବସ୍ଥାରେ ସେହି ପୁରୁଷ ଥିଲେହେଁ ଧନର ଉଷ୍ମତା ଅଭାବରୁ ତାର ସେହିସବୁ (ଅର୍ଥାତ୍ ଇନ୍ଦ୍ରିୟ, ନାମ, ବୁଦ୍ଧି ଓ ବାକ୍ୟ) କ୍ଷଣକ ମଧ୍ୟରେ ନିସ୍ତେଜ ହୋଇପଡ଼ନ୍ତି । ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ୧୨୩ ।

ଏସବୁ ଶୁଣି ମୁଁ ବିଚାରକଲି—ଏବେ ମୋର ଏଠାରେ ରହିବା ଅନୁଚିତ । କଥିତ ଅଛି—

ଅତ୍ୟନ୍ତ ବିମୁଖେ ଦୈବେ ବ୍ୟର୍ଥେ ଯତ୍ନେ ଚ ପୌରୁଷେ
ମନସ୍ୱିନୋ ଦରିଦ୍ରସ୍ୟ ବନାଦନ୍ୟତ୍ କୁତଃ ସୁଖମ୍ । ୧୨୪ ।

ଭାଗ୍ୟ ନିତାନ୍ତ ପ୍ରତିକୂଳହେଲେ ଓ ପୁରୁଷର ଉଦ୍ୟମ ବିଫଳ ହେଲେ ଧନହୀନ ବୁଦ୍ଧିମାନ ବ୍ୟକ୍ତିପକ୍ଷରେ ବନ ବ୍ୟତୀତ ଅନ୍ୟ କୌଣସିସ୍ଥାନ ସୁଖକର ହୋଇନପାରେ । ୧୨୪ । ପୁଣି—

ମନସ୍ୱୀ ମ୍ରିୟତେ କାମଂ କାର୍ପଣ୍ୟଂ ନ ତୁ ଗଚ୍ଛତି
ଅପି ନିର୍ବାଣମାୟାତି ନାନଳୋ ଯାତି ଶୀତତାମ୍ । ୧୨୫ ।

ମନସ୍ୱୀ ପୁରୁଷ ବରଂ ମରଣକୁ ବରଣ କରିନିଏ; କିନ୍ତୁ ଦୀନତାକୁ ସ୍ୱୀକାର କରେ ନାହିଁ । ଅଗ୍ନି ଜଳଦ୍ୱାରା ବିନଷ୍ଟ ହୋଇଯାଏ ପଛକେ ଶୀତଳତା ଗୁଣକୁ ଗ୍ରହଣ କରେ ନାହିଁ । ୧୨୫ । ପୁଣି—

କୁସୁମସ୍ତବକସ୍ୟେବ ଦ୍ୱେ ବୃତ୍ତୀ ତୁ ମନସ୍ୱିନଃ
ସର୍ବେଷାଂ ମୂର୍ଦ୍ଧ୍ନି ବା ତିଷ୍ଠେଦ୍ ବିଶୀର୍ଯ୍ୟେତ ବନେଽଥବା । ୧୨୬ ।

ପୁଷ୍ପଗୁଚ୍ଛର କାର୍ଯ୍ୟପରି ତେଜସ୍ୱୀ ପୁରୁଷ ପକ୍ଷରେ ଦୁଇଟି ପନ୍ଥା ଅଛି, ହୁଏତ ସେ ସମସ୍ତଙ୍କ ମସ୍ତକରେ ସ୍ଥାନ ପାଇବ ଅଥବା ବନ ମଧ୍ୟରେ ବିନଷ୍ଟ ହେବ । ୧୨୬ । ଏହି ଧନକ୍ଷୟ ବିଷୟ ଅନ୍ୟ ନିକଟରେ ପ୍ରକାଶ କରିବା ଉଚିତ ନୁହେଁ । କାରଣ—

ଅର୍ଥନାଶଂ ମନସ୍ତାପଂ ଗୃହେ ଦୁଶ୍ଚରିତାନି ଚ
ବଞ୍ଚନଞ୍ଚାପମାନଞ୍ଚ ମତିମାନ୍ନପ୍ରକାଶୟେତ୍ । ୧୨୭ ।

ବୁଦ୍ଧିମାନ ଲୋକ ଧନନାଶ, ମନସ୍ତାପ, ପରିବାରର ମନ୍ଦ ଆଚରଣ, ଅନ୍ୟଦ୍ୱାରା ପ୍ରତାରିତ ହେବା ଓ ଅପମାନ ପାଇବା ଏହି ପାଞ୍ଚୋଟିକୁ ପ୍ରକାଶ କରିବା ନିଷିଦ୍ଧ । ୧୨୭ ।

ଆତୁର ମଧ୍ୟ ପ୍ରତିକୂଳ ସ୍ଥାନରେ ଭିକ୍ଷାଦ୍ୱାରା ଜୀବନଯାତ୍ରା ନିର୍ବାହ କରିବା ନିତାନ୍ତ ଅନୁଚିତ । କାରଣ—

ବରଂ ବିଭବହୀନେନ ପ୍ରାଣୈଃ ସନ୍ତର୍ପିତୋଽନଳଃ
ନୋପଚାରପରିଭ୍ରଷ୍ଟଃ କୃପଣଃ ପ୍ରାର୍ଥ୍ୟତେ ଜନଃ ।୧୨୮ ।

ବିତ୍ତହୀନ ପୁରୁଷ ପକ୍ଷରେ ଅଗ୍ନିରେ ପ୍ରାଣ ବିସର୍ଜନ କରିବା ବରଂ ଶ୍ରେୟସ୍କର; କିନ୍ତୁ ଆଚାରପରିଭ୍ରଷ୍ଟ କୃପଣ ଲୋକ ନିକଟରେ ପ୍ରାର୍ଥୀ ହେବା ଭଲନୁହେଁ । ୧୨୮ ।

ଦାରିଦ୍ର୍ୟାଦ୍ଧ୍ରିୟମେତି ହ୍ରୀପରିଗତଃ ସତ୍ତ୍ୱାତ୍ ପରିଭ୍ରଶ୍ୟତେ
ନିଃସତ୍ତ୍ୱଃ ପରିଭୂୟତେ ପରିଭବାନ୍ନିର୍ବେଦମାପଦ୍ୟତେ
ନିର୍ବିଣ୍ଣଃ ଶୁଚମେତି ଶୋକପିହିତୋ ବୁଦ୍ଧ୍ୟା ପରିତ୍ୟଜ୍ୟତେ
ନିର୍ବୁଦ୍ଧିଃ କ୍ଷୟମେତ୍ୟହୋ ! ନିଧନତା ସର୍ବାପଦାମାସ୍ପଦମ୍ । ୧୨୯ ।

ଦାରିଦ୍ର୍ୟ ହେତୁରୁ ଲୋକ ଲଜ୍ଜାପାଏ । ଲଜ୍ଜା ହେତୁରୁ ତାର ପରାକ୍ରମ ନଷ୍ଟହୁଏ । ପରାକ୍ରମହୀନ ଲୋକ ପରାଭବ ପାଏ ଏବଂ ପରାଭବ ହେତୁରୁ ତାର ନିର୍ବେଦ ଜାତ ହୁଏ । ନିର୍ବେଦରୁ ଶୋକ-ଜନ୍ମେ । ଶୋକାର୍ତ୍ତ ଲୋକର ବୁଦ୍ଧି ଭ୍ରଂଶ ଘଟେ । ବୁଦ୍ଧି ଭ୍ରଂଶ ହେଲେ ମନୁଷ୍ୟର ବିନାଶ ହୁଏ । ଅହୋ ! ଦରିଦ୍ରତା ହେଉଛି ସକଳ ବିପଦର ଆଧାର । ୧୨୯ ।

ବରଂ ମୌନଂ କାର୍ଯ୍ୟଂ ନ ଚ ବଚନମୁକ୍ତଂ ଯଦନୃତଂ
ବରଂ କ୍ଲୈବ୍ୟଂ ପୁଂସାଂ ନ ଚ ପରକଳତ୍ରାଭିଗମନଂ
ବରଂ ପ୍ରାଣତ୍ୟାଗୋ ନ ଚ ପିଶୁନବାକ୍ୟେଷ୍ୱଭିରୁଚି-
ର୍ବରଂ ଭିକ୍ଷାଶିତ୍ୱଂ ନ ଚ ପରଧନାସ୍ୱାଦନସୁଖମ୍ । ୧୩୦ ।

ମୌନ ରହିବା ବରଂ ଭଲ; କିନ୍ତୁ ଅସତ୍ୟ କହିବା ଉଚିତ ନୁହେଁ । ପୁରୁଷର କ୍ଳୀବତା ବରଂ ଭଲ; କିନ୍ତୁ ପରଦାରାଗମନ ଅନୁଚିତ । ପ୍ରାଣତ୍ୟାଗ କରିବା ବରଂ ଶ୍ରେୟସ୍କର; କିନ୍ତୁ ଖଳ ଲୋକର ବାକ୍ୟ ଶୁଣିବାକୁ ଅଭିଳାଷ କରିବା ଅନୁଚିତ । ଭିକ୍ଷାନ୍ନ ଦ୍ୱାରା ଜୀବନରକ୍ଷା ବରଂ ଭଲ; କିନ୍ତୁ ପରଧନ ପ୍ରତି ଲାଳସା ଭଲ ନୁହେଁ । ୧୩୦ ।

ବରଂ ଶୂନ୍ୟା ଶାଳା ନ ଚ ଖଳୁ ବରୋ ଦୁଷ୍ଟବୃଷଭୋ
ବରଂ ବେଶ୍ୟା ପତ୍ନୀ ନ ପୁନରବିନୀତା କୁଳବଧୂଃ ।
ବରଂ ବାସୋଽରଣ୍ୟେ ନ ପୁନରବିବେକାଧିପପୁରେ
ବରଂ ପ୍ରାଣତ୍ୟାଗୋ ନ ପୁନରଧମାନାମୁପଗମଃ । ୧୩୧ ।

ଘରେ ଗୋମେଷାଦି ପ୍ରାଣୀ ନଥିବା ବରଂ ଭଲ; କିନ୍ତୁ ଦୁଷ୍ଟ ବୃଷଭ ରହିବା ଭଲ ନୁହେଁ । ବେଶ୍ୟାକୁ ପତ୍ନୀରୂପେ ଗ୍ରହଣ କରିବା ଭଲ, କିନ୍ତୁ ପ୍ରତିକୂଳଗାମିନୀ କୁଳବଧୂ ଭଲ ନୁହେଁ । ଅରଣ୍ୟରେ ବାସ କରିବା ବରଂ ଭଲ, କିନ୍ତୁ ଅବିବେକୀ ରାଜାର ପ୍ରାସାଦରେ ରହିବା ଭଲ ନୁହେଁ । ପ୍ରାଣତ୍ୟାଗ କରିବା ବରଂ ଭଲ; କିନ୍ତୁ ଅଧମ ଲୋକ ସହ ବାସ ଭଲ ନୁହେଁ । ୧୩୧ ।

ସେବୈବ ମାନମଖିଳଂ ଜ୍ୟୋତ୍ସ୍ନେବ
ତମୋ ଜରେବ ଲାବଣ୍ୟମ୍
ହରିହରକଥେବ ଦୁରିତଂ ଗୁଣ-
ଶତମପ୍ୟର୍ଥିତା ହରତି । ୧୩୨ ।

ପରର ସେବା ଯେପରି ମନୁଷ୍ୟର ଗୌରବକୁ ନାଶ କରେ, ଜ୍ୟୋତ୍ସ୍ନା ଯେପରି ଅନ୍ଧକାରକୁ ନାଶ କରେ, ଜରା ଯେପରି ଶରୀରର ଲାବଣ୍ୟକୁ ନାଶ କରେ, ହରିହରଙ୍କର ଗୁଣକୀର୍ତ୍ତନ ଯେପରି ପାପକୁ

ନାଶ କରେ, ସେହିପରି ପ୍ରାର୍ଥନାବୃତ୍ତି (ଭିକ୍ଷା) ଶତଶତ ଗୁଣକୁ ମଧ୍ୟ ନାଶ କରେ । ୧୩୨ ।

ତେବେ ମୁଁ କିପରି ପରାନ୍ନଦ୍ୱାରା ନିଜକୁ ପୋଷଣ କରିବି ? ପରାନ୍ନ ଭୋଜନ କରି ଜୀବନ ରକ୍ଷା କରିବା ହେଉଛି ମରଣର ଅନ୍ୟ ପନ୍ଥା ମାତ୍ର ।

ରୋଗୀ ଚିରପ୍ରବାସୀ ପରାନ୍ନଭୋଜୀ ପରାବସଥଶାୟୀ
ଯଜ୍ଜୀବତି ତନ୍ମରଣଂ ଯନ୍ମରଣଂ ସୋଽସ୍ୟ ବିଶ୍ରାମଃ । ୧୩୩ ।

ରୋଗୀ, ଚିରପ୍ରବାସୀ, ପରାନ୍ନଭୋଜୀ, ପରଗୃହଦାନବାସୀ ଏମାନଙ୍କର ଜୀବନ ଜୀବନ ନୁହେଁ, ମରଣ । ଏମାନଙ୍କର ମରଣ ହେଉଛି ଯଥାର୍ଥ ବିଶ୍ରାମ । ୧୩୩ ।

ଏହିପରି ଆଲୋଚନା କରି ମଧ୍ୟ ମୁଁ ଲୋଭବଶତଃ ପୁନର୍ବାର ସେହି ସନ୍ନ୍ୟାସୀଙ୍କର ଅନ୍ନ ଖାଇବାକୁ ମନ ବଳାଇଲି । କଥିତ-ଅଛି—

ଲୋଭେନ ବୁଦ୍ଧିଶ୍ଚଳତି ଲୋଭୋଜନୟତେ ତୃଷାମ୍
ତୃଷାର୍ତ୍ତୋ ଦୁଃଖମାପ୍ନୋତି ପରତ୍ରେହ ଚ ମାନବଃ । ୧୩୪ ।

ଲୋଭରୁ ବୁଦ୍ଧି ବିଚଳିତ ହୁଏ । ଲୋଭ ଉତ୍କଟ ଅଭିଳାଷ ଜନ୍ମାଏ । ଧନାଭିଳାଷୀ ମନୁଷ୍ୟ ଇହଲୋକରେ ତଥା ପରଲୋକରେ ଦୁଃଖ ଭୋଗ କରେ । ୧୩୪ ।

ଏହାପରେ ମୁଁ ଧୀରେ ଧୀରେ ଅଗ୍ରସର ହେଲାବେଳକୁ ବୀଣାକର୍ଣ୍ଣ ମୋତେ ସେହି ଦଦରା ବାଉଁଶରେ ତଡ଼ିଦେଲା । ତହୁଁ ମୁଁ ଚିନ୍ତାକଲି—ଯିଏ ଲୋଭୀ ଓ ଅସନ୍ତୁଷ୍ଟ ସେ ନିଶ୍ଚୟ ଆତ୍ମଦ୍ରୋହୀ । ପୁଣି—

ଧନଲୁବ୍ଧୋ ହ୍ୟସନ୍ତୁଷ୍ଟୋଽନୟ୍ୟତାତ୍ମାଽଜିତେନ୍ଦ୍ରିୟଃ
ସର୍ବା ଏବାପଦସ୍ତସ୍ୟ ଯସ୍ୟ ତୁଷ୍ଟଂ ନ ମାନସମ୍ । ୧୩୫ ।

ଯିଏ ଧନଲୋଲୁପ, ଅସନ୍ତୁଷ୍ଟ, ସଂଯମଶୂନ୍ୟ, ଇନ୍ଦ୍ରିୟପରବଶ ହୁଏ, ତାହା ଉପରେ ସକଳପ୍ରକାର ବିପଦ ଉପସ୍ଥିତ ହୁଏ । ୧୩୫ ।

ସର୍ବାଃ ସମ୍ପତ୍ତୟସ୍ତସ୍ୟ ସନ୍ତୁଷ୍ଟଂ ଯସ୍ୟ ମାନସମ୍
ଉପାନଦ୍‌ଗୂଢ଼ପାଦସ୍ୟ ନନୁ ଚର୍ମାବୃତେବ ଭୂଃ । ୧୩୬ ।

ଯାହାର ମନ ସନ୍ତୁଷ୍ଟ, ସେ ସକଳ ପ୍ରକାର ସୁଖସମ୍ପତ୍ତି ଲାଭ କରେ । ଯଥା—ଯେଉଁ ଲୋକ ନିଜର ପାଦକୁ ଉତ୍ତମ ଚର୍ମପାଦୁକା ଦ୍ୱାରା ଆବୃତ କରିଥାଏ, ତାହାର ମନେହୁଏ ଯେ ସମଗ୍ର ଭୂଭାଗ ଚର୍ମଦ୍ୱାରା ଆଚ୍ଛାଦିତ ହୋଇଅଛି । ୧୩୬ । ପୁଣି—

ସନ୍ତୋଷାମୃତତୃପ୍ତାନାଂ ଯତ୍ ସୁଖଂ ଶାନ୍ତଚେତସାମ୍
କୁତସ୍ତଦ୍ଧନଲୁବ୍ଧାନାମିତଶ୍ଚେତଶ୍ଚ ଧାବତାମ୍ । ୧୩୭ ।

ସନ୍ତୋଷରୂପକ ଅମୃତପାନରେ ତୃପ୍ତ, ପ୍ରଶାନ୍ତଚେତା ଲୋକମାନେ ଯେଉଁ ସୁଖଭୋଗ କରନ୍ତି, ଧନଲୋଲୁପ, ଇତସ୍ତତଃ ଧାବମାନ ଲୋକେ କାହୁଁ ସେ ସୁଖଭୋଗ କରିପାରିବେ ? ୧୩୭ ।

ତେନାଽଧୀତଂ ଶ୍ରୁତଂ ତେନ ତେନ ସର୍ବମନୁଷ୍ଠିତମ୍
ଯେନାଽଶାଃ ପୃଷ୍ଠତଃ କୃତ୍ୱା ନୈରାଶ୍ୟମବଲମ୍ବିତମ୍ । ୧୩୮ ।

ଯେଉଁ ଲୋକ ଆଶାକୁ ପଛରେ ଫିଙ୍ଗି ଦେଇ ନୈରାଶ୍ୟକୁ ଅବଲମ୍ବନ କରିଥାଏ, ସେ ସମସ୍ତ ଗ୍ରନ୍ଥ ପାଠ କରିଛି, ସବୁ ଶାସ୍ତ୍ର ଶୁଣିଛି ଓ ସବୁ କର୍ମ ଅନୁଷ୍ଠାନ କରିଛି ବୋଲି କହିବାକୁ ହେବ । ୧୩୮ ।

ଅସେବତେଶ୍ୱରଦ୍ୱାରମଦୃଷ୍ଟବିରହବ୍ୟଥମ୍
ଅନୁକ୍ତକ୍ଳୀବବଚନଂ ଧନ୍ୟଂ କସ୍ୟାପି ଜୀବନମ୍ । ୧୩୯ ।

ଯେଉଁ ଲୋକ ଜୀବନରେ ଧନୀଲୋକର ଦ୍ୱାରକୁ ଯାଇନାହିଁ, ସ୍ୱଜନ ବିରହଜନିତ ବ୍ୟଥା ଭୋଗିନାହିଁ, ଯିଏ ଦାରିଦ୍ର୍ୟବଶତଃ ଅନ୍ୟ ନିକଟରେ ପ୍ରାର୍ଥନା କରିନାହିଁ, ତାହାର ଜୀବନ ଜଗତରେ ଧନ୍ୟ । ୧୩୯ ।

ନ ଯୋଜନଶତଂ ଦୂରଂ ବାଧ୍ୟମାନସ୍ୟ ତୃଷ୍ଣୟା
ସନ୍ତୁଷ୍ଟସ୍ୟ କରପ୍ରାପ୍ତେଽପ୍ୟର୍ଥେ ଭବତିନାଦରଃ । ୧୪୦ ।

ଧନ ଲୋଭରେ ଆକୃଷ୍ଟ ମନୁଷ୍ୟ ଶତଯୋଜନକୁ ମଧ୍ୟ ଦୂର ବୋଲି ମନେ କରେ ନାହିଁ; କିନ୍ତୁ ଯାହାର ଚିତ୍ତ ସନ୍ତୁଷ୍ଟ, ସେ ହସ୍ତଗତ ଧନକୁ ମଧ୍ୟ ଆଦର କରେ ନାହିଁ । ୧୪୦ । ଏଣୁ ବର୍ତ୍ତମାନ ନିଜର ଅବସ୍ଥାର ଅନୁକୂଳ କାର୍ଯ୍ୟ କରିବା ମଙ୍ଗଳକର ।

କୋ ଧର୍ମୋ ? ଭୂତଦୟା; କିଂ ସୌଖ୍ୟଂ ?
ନିତ୍ୟମରୋଗିତା ଜଗତି
କଃ ସ୍ନେହଃ ? ସଦ୍‌ଭାବଃ,
କିଂ ପାଣ୍ଡିତ୍ୟଂ ? ପରିଚ୍ଛେଦଃ । ୧୪୧ ।

ଧର୍ମ କଅଣ ? ସକଳ ପ୍ରାଣୀଠାରେ ଦୟା ହେଉଛି ଧର୍ମ । ସୌଖ୍ୟ କଅଣ ? ସଂସାରରେ ସର୍ବଦା ନୀରୋଗ ରହିବାହିଁ ହେଉଛି ସୌଖ୍ୟ । ସ୍ନେହ କଅଣ ? ସଦ୍ଭାବ ହିଁ ସ୍ନେହ । ପାଣ୍ଡିତ୍ୟ କଅଣ ? କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟ କରିବା ହେଉଛି ପାଣ୍ଡିତ୍ୟ । ୧୪୧ । ପୁଣି—

ପରିଚ୍ଛେଦୋ ହି ପାଣ୍ଡିତ୍ୟଂ ଯଦାପନ୍ନା ବିପତ୍ତୟଃ
ଅପରିଚ୍ଛେଦକର୍ତ୍ତୃଣାଂ ବିପଦଃ ସ୍ୟୁଃ ପଦେପଦେ । ୧୪୨ ।

କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ କରିବାହିଁ ହେଉଛି ପାଣ୍ଡିତ୍ୟର ଲକ୍ଷଣ । କାରଣ ପାଣ୍ଡିତ୍ୟଦ୍ୱାରା ଆସନ୍ନ ବିପତ୍ତିମାନଙ୍କର ବିନାଶ ହୋଇଥାଏ । ଯେଉଁମାନେ କଅଣ କର୍ତ୍ତବ୍ୟ ଓ କଅଣ ଅକର୍ତ୍ତବ୍ୟ ସ୍ଥିର କରିପାରନ୍ତି ନାହିଁ ସେମାନେ ପଦେ ପଦେ ବିପଦର ସମ୍ମୁଖୀନ ହୁଅନ୍ତି । ୧୪୨ ।

ତ୍ୟଜେଦେକଂ କୁଳସ୍ୟାର୍ଥେ ଗ୍ରାମସ୍ୟାର୍ଥେ କୁଳଂ ତ୍ୟଜେତ୍
ଗ୍ରାମଂ ଜନପଦସ୍ୟାର୍ଥେ ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ । ୧୪୩ ।

କୁଳର ମର୍ଯ୍ୟାଦା ରକ୍ଷାକରିବାପାଇଁ ପରିବାରର ଜଣକୁ ତ୍ୟାଗ କରିବା ଉଚିତ; ଗ୍ରାମର ରକ୍ଷା ନିମନ୍ତେ କୁଳକୁ ତ୍ୟାଗ କରିବା ଉଚିତ; ଦେଶର ଉପକାର ନିମନ୍ତେ ଗ୍ରାମକୁ ତ୍ୟାଗ କରିବା ଉଚିତ; କିନ୍ତୁ ନିଜକୁ ରକ୍ଷାକରିବା ନିମନ୍ତେ ଆବଶ୍ୟକ ହେଲେ ଦେଶକୁ ମଧ୍ୟ ତ୍ୟାଗ କରିବା ଉଚିତ । ୧୪୩ ।

ପାନୀୟଂ ବା ନିରାୟାସଂ ସ୍ୱାଦ୍ୱନ୍ନଂ ବା ଭୟୋତ୍ତରମ୍
ବିଚାର୍ଯ୍ୟ ଖଳୁ ପଶ୍ୟାମି ତତ୍ ସୁଖଂ ଯତ୍ର ନିର୍ବୃତିଃ । ୧୪୪ ।

ବିନା ପ୍ରୟାସରେ ପ୍ରାପ୍ତ ପାନୀୟ ବା ପରେ ଭୟଉତ୍ପାଦକ ସୁମିଷ୍ଟ ଅନ୍ନ, ଏ ଦୁଇଟି ମଧ୍ୟରେ ବିଚାର କରି ଯହିଁରେ ଶାନ୍ତି ମିଳିବ ତାହାହିଁ ସୁଖକର ବୋଲି ମୁଁ ନିର୍ଦ୍ଧାରଣ କରୁଅଛି ।

ଏହିପରି ବିଚାର କରି ମୁଁ ନିର୍ଜନ ବନକୁ ଆସିଲି ।

ବରଂ ବନଂ ବ୍ୟାଘ୍ରଗଜେନ୍ଦ୍ରସେବିତଂ
ଦ୍ରୁମାଳୟଃ ପକ୍ୱଫଳାମ୍ବୁଭକ୍ଷଣମ୍
ତୃଣାନି ଶଯ୍ୟା ବସନଂ ଚ ବଲ୍କଳଂ
ନ ବନ୍ଧୁମଧ୍ୟେ ଧନହୀନଜୀବନମ୍ । ୧୪୫ ।

ଯେଉଁ ବନରେ ବୃକ୍ଷ ହେଉଛି ବାସସ୍ଥାନ, ବୃକ୍ଷର ପତ୍ରଫଳ ଓ ନଦୀର ଜଳ ହେଉଛି ଆହାର, ତୃଣ ହେଉଛି ଶଯ୍ୟା, ବୃକ୍ଷର ବଲ୍କଳ ହେଉଛି ବସ୍ତ୍ର, ସେପରି ବ୍ୟାଘ୍ରସିଂହାଦି ହିଂସ୍ରପ୍ରାଣୀ-ସମାକୁଳ ବନରେ ରହିବା ବରଂ ଭଲ, କିନ୍ତୁ ବନ୍ଧୁମାନଙ୍କ ମଧ୍ୟରେ ଧନହୀନ ଜୀବନଯାପନ କରିବା ଭଲ ନୁହେଁ । ୧୪୫ ।

ବନକୁ ଆସିବା ପରେ ମୋର ପୁଣ୍ୟବଳରୁ ଏହି ମିତ୍ର କାକ ଅତି ସ୍ନେହରେ ମୋତେ ଅନୁଗୃହୀତ କରିଅଛନ୍ତି । ଏବେ ମଧ୍ୟ ପୂର୍ବ ପୁଣ୍ୟବଳରେ ସ୍ୱର୍ଗତୁଲ୍ୟ ତୁମର (କୂର୍ମର) ଏହି ଆବାସସ୍ଥଳକୁ ଆସିଅଛି ।

ସଂସାର ବିଷବୃକ୍ଷସ୍ୟ ଦ୍ୱେ ଏବ ରସବତ୍‌ଫଳେ
କାବ୍ୟାମୃତରସାସ୍ୱାଦଃ ସଙ୍ଗମଃ ସଜ୍ଜନୈଃ ସହ । ୧୪୬ ।

ସଂସାରରୂପକ ବିଷବୃକ୍ଷରେ ଦୁଇଟି ସରସ ଫଳ ଅଛି । ଗୋଟିଏ ହେଉଛି, କାବ୍ୟର ଅମୃତତୁଲ୍ୟ ରସର ଆସ୍ୱାଦନ ଓ ଅନ୍ୟଟି ହେଉଛି ସଜ୍ଜନମାନଙ୍କ ସାହଚର୍ଯ୍ୟ । ୧୪୬ ।

ସତ୍‌ସଙ୍ଗଃ କେଶବେ ଭକ୍ତିର୍ଗଙ୍ଗାମ୍ଭସି ନିମଜ୍ଜନମ୍
ଅସାରେ ଖଳୁ ସଂସାରେ ତ୍ରୀଣି ସାରାଣି ଭାବୟେତ୍ । ୧୪୭ ।

ଏହି ଅସାର ସଂସାରରେ ତିନୋଟି ସାର ପଦାର୍ଥ ଅଛି ବୋଲି ମନେ କରିବ । ସେ ତିନୋଟି ହେଉଛି—ସାଧୁସଙ୍ଗ, ଈଶ୍ୱର-ଭକ୍ତି ଓ ଗଙ୍ଗା ଜଳରେ ସ୍ନାନ । ୧୪୭ । ମନ୍ଥର କହିଲା—

ଅର୍ଥାଃ ପାଦରଜୋପମା ଗିରିନଦୀବେଗୋପମଂ ଯୌବନ-
ମାୟୁଷ୍ୟଂ ଜଳବିନ୍ଦୁଲୋଳଚପଳଂ ଫେନୋପମଂ ଜୀବନମ୍
ଧର୍ମଂ ଯୋ ନ କରୋତି ନିଶ୍ଚଳମତିଃ ସ୍ୱର୍ଗାର୍ଗଳୋଦ୍‌ଘାଟନଂ
ପଶ୍ଚାତ୍ତାପହତୋ ଜରାପରିଗତଃ ଶୋକାଗ୍ନିନା ଦହ୍ୟତେ ।୧୪୮

ଜଗତରେ ଧନ ହେଉଛି ପାଦର ଧୂଳିତୁଲ୍ୟ; ଯୌବନ ଗିରିନଦୀର ବେଗ ସଦୃଶ କ୍ଷଣସ୍ଥାୟୀ; ମନୁଷ୍ୟର ଶରୀର ଜଳବିନ୍ଦୁ-ସଦୃଶ କ୍ଷଣଭଙ୍ଗୁର ଓ ଚଞ୍ଚଳ । ଜୀବନ ଫେନତୁଲ୍ୟ ନାଶଶୀଳ ଅଟେ । ତେଣୁ ଯେଉଁ ଲୋକ ସ୍ଥିରଚିତ୍ତ ହୋଇ ସ୍ୱର୍ଗଦ୍ୱାର-ଉଦ୍‌ଘାଟନକାରୀ ଧର୍ମର ଅନୁଷ୍ଠାନ ନ କରେ ସେ ପରେ ଜରାଗ୍ରସ୍ତ ହୋଇ ଅନୁତାପ କରେ ଓ ଶୋକାଗ୍ନିରେ ଦଗ୍‌ଧ ହୁଏ । ୧୪୮ ।

ତୁମେ ମଧ୍ୟ ଯଥେଷ୍ଟ ଧନ ସଞ୍ଚୟ କରିଅଛ । ଧନ ସଞ୍ଚୟର ଫଳ କଣ, ଶୁଣ—

ଉପାର୍ଜିତାନାଂ ବିତ୍ତାନାଂ ତ୍ୟାଗ ଏବ ହି ରକ୍ଷଣମ୍
ତଡ଼ାଗୋଦରସଂସ୍ଥାନାଂ ପରୀବାହ ଇବାଽମ୍ଭସାମ୍ । ୧୪୯ ।

ଯେପରି ପୁଷ୍କରିଣୀର ଗର୍ଭସ୍ଥିତ ଜଳର ସୁରକ୍ଷାପାଇଁ ଅତିରିକ୍ତ ଜଳକୁ ବାହାର କରି ଦେବାକୁ ହୁଏ, ସେହିପରି ସଞ୍ଚିତ ଧନକୁ ଦାନ କରିଦେବା ଉଚିତ । ଏହାହିଁ ଧନର ସୁରକ୍ଷା । ୧୪୯ । ପୁଣି—

ଯଦଧୋଽଧଃ କ୍ଷିତୌ ବିତ୍ତଂ ନିଚଖାନ ମିତମ୍ପଚଃ
ତଦଧୋ ନିଳୟଂ ଗନ୍ତୁଂ ଚକ୍ରେ ପନ୍ଥାନମଗ୍ରତଃ । ୧୫୦ ।

ଧନବାନ୍ ହୋଇ ମଧ୍ୟ ଯେଉଁ କୃପଣ ଲୋକ ଭୂମିରେ ଗର୍ତ୍ତ ଖୋଳି ସେଥିରେ ଧନ ପୋତି ରଖେ, ସେ ତଳକୁ ତଳକୁ ଖୋଳିବାଦ୍ୱାରା ମରଣପୂର୍ବରୁ ନିଜର ନରକଗମନର ପଥ ପ୍ରସ୍ତୁତ କରିଦିଏ । ୧୫୦ । ଯେହେତୁ—

ନିଜସୌଖ୍ୟଂ ନିରୁନ୍ଧାନୋ ଯୋ ଧନାର୍ଜନମିଚ୍ଛତି
ପରାର୍ଥଭାରବାହୀବ ସ କ୍ଲେଶସ୍ୟୈବ ଭାଜନମ୍ । ୧୫୧ ।

ଯେଉଁ ଲୋକ ନିଜର ସୁଖ ତ୍ୟାଗ କରି ଧନ ସଞ୍ଚୟ କରିବାକୁ ଇଚ୍ଛା କରେ ସେ ପରଦ୍ରବ୍ୟବହନକାରୀ ଗର୍ଦ୍ଦଭ ସଦୃଶ କେବଳ କ୍ଳେଶ ଭୋଗ କରେ । ୧୫୧ । ଆହୁରି କଥିତ ଅଛି—

ଦାନୋପଭୋଗହୀନେନ ଧନେନ ଧନିନୋ ଯଦି
ଭବାମଃ କିଂ ନ ତେନୈବ ଧନେନ ଧନିନୋବୟମ୍ । ୧୫୨ ।

- ଦାନ ଓ ଉପଭୋଗରେ ବ୍ୟୟିତ ହୋଇ ନଥିବା ଧନ ହେତୁରୁ ଯଦି କୌଣସି ଲୋକ ଧନବାନ୍ ହୁଏ, ତେବେ ଆମେମାନେ କାହିଁକି ଅନ୍ୟର ସେହି ଧନ ଯୋଗେ ନିଜକୁ ଧନୀ ବୋଲି ନ କହିବା ? ୧୫୨। ଯେହେତୁ—

ଧନେନ କିଂ ? ଯୋ ନ ଦଦାତି ନାଶ୍ନୁତେ
ବଳେନ କିଂ ? ଯଶ୍ଚରିପୂନ୍ ନ ବାଧତେ ।
ଶ୍ରୁତେନ କିଂ ? ଯୋ ନ ଚ ଧର୍ମମାଚରେତ୍
କିମାତ୍ମନା ? ଯୋ ନ ଜିତେନ୍ଦ୍ରିୟୋଭବେତ୍ । ୧୫୩ ।

ଯେଉଁ ଧନୀଲୋକ ଧନକୁ ଦାନ କରେ ନାହିଁ ବା ନିଜେ ଉପଭୋଗ କରେ ନାହିଁ, ତାର ସେହି ଧନରେ କି ଫଳ ? ଯେଉଁ ବଳବାନ୍ ଲୋକ ଶତ୍ରୁକୁ ପରାଭବ ଦେଇ ନ ପାରେ, ତାର ବଳରେ କି ଫଳ ? ଯେଉଁ ଲୋକ ଶାସ୍ତ୍ରଜ୍ଞ ହୋଇ ଧର୍ମ ଆଚରଣ କରେ ନାହିଁ, ତାର ଶାସ୍ତ୍ରଜ୍ଞାନରେ କି ଫଳ ? ସେହିପରି ଯେଉଁ ଲୋକ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ପାରେ, ତାର ଜୀବନରେ କି ଫଳ ? ୧୫୩ ।

ଅସମ୍ଭୋଗେନ ସାମାନ୍ୟଂ କୃପଣସ୍ୟ ଧନଂ ପରୈଃ
ଅସ୍ୟେଦମିତି ସମ୍ବନ୍ଧୋ ହାନୌ ଦୁଃଖେନ ଗମ୍ୟତେ । ୧୫୪ ।

କୃପଣର ଧନ ଉପଭୋଗରେ ବ୍ୟୟିତ ହୋଇ ନ ଥିବାରୁ ସେ ଧନ ତାର ଅଧିକାରୀ ପକ୍ଷରେ ଯାହା, ଅପରଲୋକ ପକ୍ଷରେ ମଧ

ତାହା । କେବଳ ସେହି ଧନ ଅକସ୍ମାତ୍ (ଚୋରଦ୍ୱାରା ଅପହୃତ ବା ) ବିନଷ୍ଟ ହେଲେ ତାର ଅଧିକାରୀର ମନରେ ଯେଉଁ ଦୁଃଖ ଜାତ ହୁଏ, ସେଥିରୁ ତାର ଅଧିକାରିତ୍ୱ ସମ୍ବନ୍ଧ ସୂଚିତ ହୁଏ । ୧୫୪ ।

ନ ଦେବାୟ ନ ବିପ୍ରାୟ ନ ବନ୍ଧୁଭ୍ୟୋ ନ ଚାତ୍ମନେ
କୃପଣସ୍ୟ ଧନଂ ଯାତି ବହ୍ନିତସ୍କରପାର୍ଥିବୈଃ । ୧୫୫ ।

କୃପଣ ଲୋକର ଧନ ଦେବତାଙ୍କ ଉଦ୍ଦେଶ୍ୟରେ କି ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ କିମ୍ବା ନିଜ ଉଦ୍ଦେଶ୍ୟରେ ବ୍ୟୟିତ ହୁଏ ନାହିଁ । କେବଳ ଅଗ୍ନିଦ୍ୱାରା ଭସ୍ମୀଭୂତ ହୁଏ, ଚୋରମାନଙ୍କଦ୍ୱାରା ଅପହୃତ ହୁଏ ଅଥବା ରାଜାଙ୍କଦ୍ୱାରା ବଳପୂର୍ବକ ନିଆଯାଏ । ୧୫୫ । ପୁଣି କଥିତ ଅଛି—

ଦାନଂ ପ୍ରିୟବାକ୍‌ସହିତଂ
ଜ୍ଞାନମଗର୍ବଂ କ୍ଷମାଽନ୍ୱିତଂ ଶୌର୍ଯ୍ୟମ୍
ତ୍ୟାଗସହିତଞ୍ଚ ବିତ୍ତଂ
ଦୁର୍ଲଭମେତଚ୍ଚତୁର୍ଭଦ୍ରମ୍ । ୧୫୬ ।

ପ୍ରିୟବାକ୍ୟପୂର୍ବକ ଦାନ, ଗର୍ବରହିତ ପାଣ୍ଡିତ୍ୟ, କ୍ଷମାଯୁକ୍ତ ଶୂରତା, ତ୍ୟାଗଯୁକ୍ତ ଧନ—ଏହି ଚାରୋଟି ଶ୍ରେୟଃଯୁକ୍ତ ପଦାର୍ଥ ଜଗତରେ ଦୁର୍ଲଭ ଅଟେ । ୧୫୬ । ସେଥିପାଇଁ କଥିତ ଅଛି—

କର୍ତ୍ତବ୍ୟଃ ସଞ୍ଚୟୋ ନିତ୍ୟଂ କର୍ତ୍ତବ୍ୟୋ ନାତିସଞ୍ଚୟଃ
ପଶ୍ୟ ସଞ୍ଚୟଶୀଲୋଽସୌ ଧନୁଷା ଜମ୍ବୁକୋ ହତଃ । ୧୫୭ ।

ସର୍ବଦା ସଞ୍ଚୟ କରିବା କର୍ତ୍ତବ୍ୟ; କିନ୍ତୁ ଅତି ମାତ୍ରାରେ ସଞ୍ଚୟ କରିବା ଉଚିତ ନୁହେଁ । ଦେଖ, ଅତିସଞ୍ଚୟ କରିବାରୁ ଶୃଗାଳ ଧନୁର ଆଘାତରେ ପ୍ରାଣ ହରାଇଲା ।” ୧୫୭ ।

ଏହାଶୁଣି ସେ ଦୁହେଁ (ମୂଷିକ ଓ କାକ) କହିଲେ, "ସେ କଥାଟି କଅଣ ?"

ମନ୍ଥର କହିବାକୁ ଆରମ୍ଭ କଲା ।

## କଥା-୭

କଲ୍ୟାଣକଟକରାଜ୍ୟରେ ଭୈରବ ନାମକ ଜଣେ ବ୍ୟାଧ ବାସ କରୁଥିଲା । ଏକଦା ସେ ମାଂସ ଲୋଭରେ ଧନୁ ଧରି ମୃଗ ଅନ୍ୱେଷଣ କରୁ କରୁ ବିନ୍ଧ୍ୟାରଣ୍ୟରେ ପ୍ରବେଶ କଲା । ସେଠାରେ ସେ ଗୋଟିଏ ମୃଗ ବଧ କଲା । ସେହି ମୃଗଟିକୁ ଘେନି ଆସୁଥିବା ସମୟରେ ସେ ଗୋଟିଏ ଭୀଷଣାକାର ବରାହ ଦେଖିଲା । ତହୁଁ ସେ ମୃଗକୁ ତଳେ ରଖିଦେଇ ବରାହ ଉପରେ ଶର ନିକ୍ଷେପ କଲା । ଶରାହତ ବରାହ କ୍ରୋଧରେ ଘୋର ଗର୍ଜନ କରି ବ୍ୟାଧକୁ ଆକ୍ରମଣ କରିବାରୁ ସେ ଛିନ୍ନଦ୍ରୁମତୁଲ୍ୟ ଭୂତଳରେ ପଡ଼ିଗଲା । କଥିତ ଅଛି—

ଜଳମଗ୍ନିର୍ବିଷଂ ଶସ୍ତ୍ରଂ କ୍ଷୁଦ୍‌ବ୍ୟାଧିଃ ପତନଂ ଗିରେଃ
ନିମିତ୍ତଂ କିଞ୍ଚିଦାସାଦ୍ୟ ଦେହୀ ପ୍ରାଣୈର୍ବିମୁଚ୍ୟତେ । ୧୫୮ ।

ଜଳ, ଅଗ୍ନି, ବିଷ, ଶସ୍ତ୍ର, କ୍ଷୁଧା, ରୋଗ, ପର୍ବତରୁ ପତନ ଇତ୍ୟାଦି କୌଣସି କାରଣରୁ ପ୍ରାଣୀର ପ୍ରାଣନାଶ ଘଟିଥାଏ । ୧୫୮ ।

ତତ୍ପରେ ସେ ଦୁହିଁଙ୍କର ( ବ୍ୟାଧ ଓ ବରାହର ) ପଦାଘାତରେ ଗୋଟିଏ ସର୍ପ ମଧ୍ୟ ସେଠାରେ ମରିଗଲା । ଏଥିମଧ୍ୟରେ ଦୀର୍ଘରାବ ନାମକ ଗୋଟିଏ ଶୃଗାଳ ବନ ମଧ୍ୟରେ ଆହାର ଅନ୍ୱେଷଣରେ ବୁଲୁ ବୁଲୁ ମୃଗ, ବ୍ୟାଧ, ବରାହ ଓ ସର୍ପ ମରି ପଡ଼ିଥିବାର ଦେଖି ମନେ ମନେ ବିଚାର କଲା, "ଓଃ କି ଭାଗ୍ୟ ! ଆଜି ନିଶ୍ଚୟ ମୋର ମହାନ୍ ସୌଭାଗ୍ୟ ଉପସ୍ଥିତ । ଅଥବା—

ଅଚନ୍ତିତାନି ଦୁଃଖାନି ଯଥୈବାୟାନ୍ତି ଦେହିନାମ୍
ସୁଖାନ୍ୟପି ତଥା ମନ୍ୟେ ଦୈବମତ୍ରାତିରିଚ୍ୟତେ । ୧୫୯ ।

ଦେହଧାରୀ ପ୍ରାଣୀର ଭାଗ୍ୟରେ ଯେପରି ଆକସ୍ମିକ ଦୁଃଖ ଆସିଥାଏ, ସେହିପରି ଆକସ୍ମିକ ସୁଖ ମଧ୍ୟ ଆସିଥାଏ ବୋଲି ମୋର ମନେହୁଏ । ଦୁଃଖ ବା ସୁଖ ଯାହା ହେଉ ନା କାହିଁକି ସେଥିରେ ଦୈବହିଁ ପ୍ରଧାନ । ୧୫୯ ।

ଯାହାହେଉ ଏମାନଙ୍କର ମାଂସରେ ସ୍ୱଚ୍ଛନ୍ଦରେ ମୋର ତିନି ମାସର ଆହାର ଚଳିଯିବ ।

ମାସମେକଂ ନରୋ ଯାତି
ଦ୍ୱୌ ମାସୌ ମୃଗଶୂକରୌ
ଅହିରେକଂ ଦିନଂ ଯାତି
ଅଦ୍ୟ ଭକ୍ଷ୍ୟୋ ଧନୁର୍ଗୁଣଃ । ୧୬୦ ।

ମନୁଷ୍ୟର ମାଂସରେ ମାସଟିଏ ଯିବ । ମୃଗ ଓ ବରାହର ମାଂସରେ ଦୁଇମାସ ଯିବ । ସର୍ପ ମାଂସରେ ଗୋଟିଏ ଦିନ ଯିବ । ଆଜି ଧନୁରେ ଥିବା ଏହି ଗୁଣଟିକୁ ଖାଇବା ଉଚିତ । ୧୬୦ ।

ଏହି ହେତୁରୁ ପ୍ରଥମ କ୍ଷୁଧାରେ ସେହି ସ୍ୱାଦୁହୀନ ଧନୁସଂଲଗ୍ନ ତନ୍ତୁନିର୍ମିତ ଗୁଣଟିକୁ ଖାଇବି । ଏହା କହି ସେ ତାହାକୁ ଖାଇବାକୁ ଲାଗିଲା । ସ୍ନାୟୁଗୁଣଟି ଛିଣ୍ଡିଯିବାରୁ ହଠାତ୍ ଧନୁଟି ଛିଟିକି ଯାଇ ସିଆଳଟିର ଛାତିକୁ ବିଦାରିଦେବାରୁ ସେ ପଞ୍ଚତ୍ୱ ପ୍ରାପ୍ତହେଲା ।

ଏହି ହେତୁରୁ ମୁଁ କହୁଥିଲି ଯେ ପ୍ରତ୍ୟହ ସଞ୍ଚୟ କରିବା ଉଚିତ, କିନ୍ତୁ ଅତି ସଞ୍ଚୟ ଅନୁଚିତ । ଆହୁରି ମଧ୍ୟ—

ଯଦ୍ଦଦାତି ଯଦଶ୍ନାତି ତଦେବ ଧନିନୋ ଧନମ୍
ଅନ୍ୟେ ମୃତସ୍ୟ କ୍ରୀଡ଼ନ୍ତି ଦାରୈରପି ଧନୈରପି । ୧୬୧ ।

ଧନୀ ଲୋକ ଯେତିକ ଧନ ଦାନ କରେ, ଯେତିକ ଧନ ନିଜେ ଭୋଗ କରେ, ସେତିକ ମାତ୍ର ତାହାର ଧନ ବୋଲି ବୁଝାଯାଏ; ଅନ୍ୟ ଧନ ତାହାର ନୁହେଁ । କାରଣ ତାର ମୃତ୍ୟୁପରେ ତାର ପୁତ୍ର ପତ୍ନୀ ପ୍ରଭୃତି ବା ଅନ୍ୟ ଲୋକେ ତାର ସଞ୍ଚିତ ଧନକୁ ଉପଭୋଗ କରନ୍ତି । ୧୬୧ ।

ଯଦ୍ଦଦାସି ବିଶିଷ୍ଟେଭ୍ୟୋ ଯଚ୍ଚାଶ୍ନାସି ଦିନେଦିନେ
ତତ୍ତେ ବିତ୍ତମହଂ ମନ୍ୟେ ଶେଷଂ କସ୍ୟାପି ରକ୍ଷସି । ୧୬୨ ।

ଯେଉଁ ଧନକୁ ସତ୍ପାତ୍ରରେ ଦାନ କରୁଛ, ଯେଉଁ ଧନକୁ ପ୍ରତିଦିନ ଭୋଗ କରୁଛ, ସେତିକ ମାତ୍ର ତୁମର ଧନ ବୋଲି ମୁଁ ମନେ କରେଁ । ଅବଶିଷ୍ଟ ଧନ କାହାପାଇଁ ରଖୁଛ ? ୧୬୨ ।

ସେ କଥା ଥାଉ । ବର୍ତ୍ତମାନ ଗତ ବିଷୟ ବିଚାର କରିବାରେ କି ଫଳ ? ଯେହେତୁ—

ନାପ୍ରାପ୍ୟମଭିବାଞ୍ଛନ୍ତି ନଷ୍ଟଂ ନେଚ୍ଛନ୍ତି ଶୋଚିତୁମ୍
ଆପତ୍ସ୍ୱପି ନ ମୁହ୍ୟନ୍ତି ନରାଃ ପଣ୍ଡିତବୁଦ୍ଧୟଃ । ୧୬୩ ।

ବୁଦ୍ଧିମାନ୍ ପଣ୍ଡିତ ଲୋକେ ଅପ୍ରାପ୍ୟ ବସ୍ତୁକୁ ପାଇବାଲାଗି ଇଚ୍ଛା କରନ୍ତି ନାହିଁ; ନଷ୍ଟ ବସ୍ତୁଲାଗି ଶୋକ କରନ୍ତି ନାହିଁ; ଆପଦ ଉପସ୍ଥିତ ହେଲେ ଅଧୀର ହୁଅନ୍ତି ନାହିଁ । ୧୬୩ ।

ତେଣୁ ହେ ସଖେ ମୂଷିକରାଜ, ତୁମେ ସର୍ବଦା ଉତ୍ସାହ-ସହକାରେ ରହିବା ଉଚିତ । କାରଣ—

ଶାସ୍ତ୍ରାଣ୍ୟଧୀତ୍ୟାପି ଭବନ୍ତି ମୂର୍ଖା-
ଯସ୍ତୁ କ୍ରିୟାବାନ୍ ପୁରୁଷଃ ସ ବିଦ୍ୱାନ୍ ।
ସୁଚିନ୍ତିତଂ ଚୌଷଧମାତୁରାଣାଂ
ନ ନାମମାତ୍ରେଣ କରୋତ୍ୟରୋଗମ୍ । ୧୬୪ ।

ଶାସ୍ତ୍ର ଅଧ୍ୟୟନ କରି ମଧ୍ୟ ଲୋକେ ମୂର୍ଖ ରହିପାରନ୍ତି । ଯେଉଁ ଲୋକ ଶାସ୍ତ୍ର ପଢ଼ି ତଦନୁସାରେ କାର୍ଯ୍ୟ କରେ ସେ ହେଉଛି ଯଥାର୍ଥ ବିଦ୍ୱାନ୍ ପୁରୁଷ । ଗଣ୍ଠିର ବିଚାରରେ ନିର୍ବାଚିତ ଔଷଧ କେବଳ ନାମ ଦ୍ୱାରା ରୋଗୀକୁ ଆରୋଗ୍ୟ କରି ନ ପାରେ । ଔଷଧକୁ ରୋଗୀଠାରେ ପ୍ରୟୋଗ କରିବାକୁ ହୁଏ । ୧୬୪ । ପୁନଶ୍ଚ—

ନ ସ୍ୱଲ୍ପମପ୍ୟଧ୍ୟବସାୟଭୀରୋଃ
କରୋତି ବିଜ୍ଞାନବିଧିର୍ଗୁଣଂ ହି ।
ଅନ୍ଧସ୍ୟ କିଂ ହସ୍ତତଳସ୍ଥିତୋଽପି
ପ୍ରକାଶୟତ୍ୟର୍ଥମିହ ପ୍ରଦୀପଃ । ୧୬୫ ।

ଶାସ୍ତ୍ରୋପଦେଶ ଦ୍ୱାରା ଅଧ୍ୟବସାୟ କରିବାକୁ ପରାଙ୍ମୁଖ ବ୍ୟକ୍ତିର କିଛିମାତ୍ର ଉପକାର ହୁଏ ନାହିଁ, ଯେପରିକି ଅନ୍ଧ ବ୍ୟକ୍ତିର ହସ୍ତସ୍ଥିତ ପ୍ରଦୀପ ଅନ୍ଧକୁ କୌଣସି ପଦାର୍ଥ ଦେଖାଇ ପାରେ ନାହିଁ । ୧୬୫ ।

ଅତଏବ ହେ ମିତ୍ର, ତୁମେ ମୋ ଗୃହରେ ଶେଷ ଅବସ୍ଥା ଅତିବାହିତ କର । ତଦ୍ଦ୍ୱାରା ଶାନ୍ତି ଲାଭ କରିପାରିବ । ମୋ ଘରେ ରହିବା କଷ୍ଟକୁ କଷ୍ଟ ବୋଲି ମନେ କରିବ ନାହିଁ ।

ସୁଖମାପତିତଂ ସେବ୍ୟଂ ଦୁଃଖମାପତିତଂ ତଥା
ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ । ୧୬୬ ।

ସୁଖ ଅବା ଦୁଃଖ ଯାହା ଆସିବ ତାକୁ ସହ୍ୟ କରିବାକୁ ହେବ । ସୁଖ ଓ ଦୁଃଖ ଚକ୍ରପରି ଘୂରୁଥାନ୍ତି । ୧୬୬ ।

ନିପାନମିବ ମଣ୍ଡୂକାଃ ସରଃ ପୂର୍ଣ୍ଣମିବାଣ୍ଡଜାଃ
ସୋଦ୍ୟୋଗଂ ନରମାୟାନ୍ତି ବିବଶାଃ ସର୍ବସମ୍ପଦଃ । ୧୬୭ ।

ମଣ୍ଡୁକମାନେ ଯେପରି ଜଳାଶୟକୁ ଯାଆନ୍ତି, ଅଣ୍ଡଜମାନେ ଯେପରି ଜଳପୂର୍ଣ୍ଣ ସରୋବରକୁ ଯାଆନ୍ତି ସେହିପରି ସକଳପ୍ରକାର ସମୃଦ୍ଧି ଉଦ୍ୟୋଗୀ ପୁରୁଷ ନିକଟକୁ ଯାଇଥାନ୍ତି । ୧୬୭ । ପୁଣି—

ଉତ୍ସାହସମ୍ପନ୍ନମଦୀର୍ଘସୂତ୍ରଂ
କ୍ରିୟାବିଧିଜ୍ଞଂ ବ୍ୟସନେଷ୍ୱସକ୍ତମ୍
ଶୂରଂ କୃତଜ୍ଞଂ ଦୃଢ଼ସୌହୃଦଞ୍ଚ
ଲକ୍ଷ୍ମୀଃ ସ୍ୱୟଂ ଯାତି ନିବାସହେତୋଃ । ୧୬୮ ।

ଉତ୍ସାହସମ୍ପନ୍ନ, ଅନଳସ, କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣରେ ବିଚକ୍ଷଣ, ବ୍ୟସନଶୂନ୍ୟ, ଶୂର, ମିତ୍ରତାରେ ଦୃଢ଼ ବ୍ୟକ୍ତି ନିକଟରେ ବାସକରିବା ନିମନ୍ତେ ସ୍ୱୟଂ ଲକ୍ଷ୍ମୀ ମଧ୍ୟ ଯାଇଥାନ୍ତି । ୧୬୮ । ବିଶେଷତଃ—

ବିନାପ୍ୟର୍ଥୈର୍ଧୀରଃ ସ୍ପୃଶତି ବହୁମାନୋନ୍ନତିପଦଂ
ସମାଯୁକ୍ତୋଽପ୍ୟର୍ଥୈଃ ପରିଭବପଦଂ ଯାତି କୃପଣଃ,
ସ୍ୱଭାବାଦୁଦ୍ଭୂତାଂ ଗୁଣସମୁଦୟାଽବାପ୍ତିବିଷୟାଂ
ଦ୍ୟୁତିଂ ସୈଂହୀଂ ଶ୍ୱା କିଂ ଧୃତକନକମାଳୋଽପି ଲଭତେ । ୧୬୯।

ଧୀର ପୁରୁଷ ଧନହୀନ ହୋଇଥିଲେହେଁ ବହୁ ସମ୍ମାନ ଓ ଉଚ୍ଚ ପଦର ଅଧିକାରୀ ହୁଏ, କୃପଣ ଅର୍ଥ ଥିବା ସତ୍ତ୍ୱେ ପରାଭବ ପାଏ, ଏକଥା ଯଥାର୍ଥ । କୁକୁର ସୁବର୍ଣ୍ଣହାର ପିନ୍ଧିଲେ ସୁଦ୍ଧା ସ୍ୱଭାବଜାତ ଶୌର୍ଯ୍ୟାଦି ଗୁଣଯୁକ୍ତ ସିଂହର ଦୀପ୍ତି ଲାଭ କରିପାରେ ନାହିଁ । ୧୬୯ । ପୁଣି—

ଧନବାନିତି ହି ମଦସ୍ତେ କିଂ ଗତବିଭବୋ ବିଷାଦମୁପଯାସି
କରନିହତ କନ୍ଦୁକସମାଃ ପାତୋତ୍ପାତା ମନୁଷ୍ୟାଣାମ୍ । ୧୭୦ ।

'ମୁଁ ଧନବାନ୍' ତୁମର ଯଦି ଏହି ଅଭିମାନ ଥାଏ, ତେବେ ଧନ ଚାଲିଗଲେ କାହିଁକି ଦୁଃଖ କରିବ ? କାରଣ କରତଳଗତ କନ୍ଦୁକ ପରି ମନୁଷ୍ୟର ଉତ୍‌ଥାନ ଓ ପତନ ଲାଗି ରହିଥାଏ । ୧୬୦ । ପୁଣି—

ବୃତ୍ତ୍ୟର୍ଥଂ ନାତିଚେଷ୍ଟେତ ସା ହି ଧାତ୍ରୈବ ନିର୍ମିତା
ଗର୍ଭାଦୁତ୍‌ପତିତେ ଜନ୍ତୌ ମାତୁଃ ପ୍ରସ୍ରବତଃ ସ୍ତନୌ । ୧୬୧ ।

ଜୀବିକା ଅର୍ଜନପାଇଁ ଅତ୍ୟଧିକ ଚେଷ୍ଟା କରିବା ଉଚିତ ନୁହେଁ; କାରଣ ବିଧାତା ମାନବର ଜୀବିକା ସ୍ଥିରକରି ଦେଇଥାନ୍ତି । ଦେଖ, ଶିଶୁ ମାତୃଗର୍ଭରୁ ପଡ଼ିବାମାତ୍ରେ ତାପାଇଁ ମାତାର ସ୍ତନରୁ ଦୁଗ୍‌ଧ ସ୍ରବିଥାଏ । ୧୬୧ । ଆହୁରି ମଧ ହେ ମିତ୍ର, ଶୁଣ—

ଯେନ ଶୁକ୍ଳୀକୃତା ହଂସାଃ ଶୁକାଶ୍ଚ ହରିତୀକୃତାଃ
ମୟୂରାଶ୍ଚିତ୍ରିତା ଯେନ ସ ତେ ବୃତ୍ତିଂ ବିଧାସ୍ୟତି । ୧୬୨ ।

ଯେଉଁ ବିଧାତା ହଂସକୁ ଶୁକ୍ଳବର୍ଣ୍ଣ କରି ଅଛନ୍ତି, ଶୁକପକ୍ଷୀକୁ ସବୁଜବର୍ଣ୍ଣ କରିଅଛନ୍ତି ଓ ମୟୂରକୁ ନାନା ବର୍ଣ୍ଣରେ ଚିତ୍ରିତ କରି-ଅଛନ୍ତି, ସେହି ବିଧାତା ତୁମ ଜୀବିକାର ବ୍ୟବସ୍ଥା କରିବେ । ୧୬୨ । ଆହୁରି ମଧ ହେ ମିତ୍ର, ବଡ଼ଲୋକଙ୍କର ରହସ୍ୟ ଶୁଣ—

ଜନୟନ୍ତ୍ୟର୍ଜନେ ଦୁଃଖଂ ତାପୟନ୍ତି ବିପତ୍ତିଷୁ
ମୋହୟନ୍ତି ଚ ସମ୍ପତ୍ତୌ କଥମର୍ଥାଃ ସୁଖାବହାଃ । ୧୬୩ ।

ଧନ ଅର୍ଜନ କରିବା ଲାଗି ଦୁଃଖ ଭୋଗ କରିବାକୁ ହୋଇ-ଥାଏ । ବିପତ୍ତି କାଳରେ ଅର୍ଥାତ୍ ଚୋରିଦ୍ୱାରା ଅପହୃତ ହେଲେ ଧନ ପରିତାପ ଜନ୍ମାଇଥାଏ । ବହୁବିଧ ଐଶ୍ୱର୍ଯ୍ୟ ମିଳିଲେ ଧନ ଗର୍ବଜାତ କରାଏ । ଅତଏବ ଧନ କିପରି ସୁଖର କାରଣ ହୋଇ-ପାରେ ? ୧୬୩ । ପୁଣି—

ଧର୍ମାର୍ଥଂ ଯସ୍ୟ ବିତ୍ତେହା ବରଂ ତସ୍ୟ ନିରୀହତା
ପ୍ରକ୍ଷାଳନାଦ୍ଧି ପଙ୍କସ୍ୟ ଦୂରାଦସ୍ପର୍ଶନମ୍ ବରମ୍ । ୧୭୪ ।

ଯେଉଁ ଲୋକ ( ଅଧର୍ମ ଆଚରଣ କରି ପରେ ତାର ବିନାଶ ପାଇଁ ) ଦାନଯଜ୍ଞ ପ୍ରଭୃତି ଧର୍ମକାର୍ଯ୍ୟ ନିମନ୍ତେ ଧନ ଅର୍ଜିବାକୁ ଚେଷ୍ଟା କରେ, ତାହା ପକ୍ଷରେ ଏପରି ଚେଷ୍ଟା ନ କରିବା ଭଲ; କାରଣ ପଙ୍କରେ ପଶି ଧୋଇଦେବା ଅପେକ୍ଷା ପଙ୍କକୁ ଆଦୌ ନ ଛୁଇଁବା ବରଂ ଶ୍ରେୟସ୍କର । ୧୭୪ ।

ଯଥା ହ୍ୟାମିଷମାକାଶେ ପକ୍ଷିଭିଃ ଶ୍ୱାପଦୈର୍ଭୁବି
ଭକ୍ଷ୍ୟତେ ସଲିଳେ ମତ୍ସ୍ୟୈସ୍ତଥା ସର୍ବତ୍ର ବିତ୍ତବାନ୍ । ୧୭୫ ।

ଯେପରି ଆମିଷକୁ ( ମାଂସକୁ ) ଆକାଶରେ ପକ୍ଷୀମାନେ ଖାଆନ୍ତି, ସ୍ଥଳଚର ସିଂହବ୍ୟାଘ୍ରାଦି ପ୍ରାଣୀମାନେ ଖାଆନ୍ତି ତଥା ଜଳଚର ମତ୍ସ୍ୟାଦି ପ୍ରାଣୀମାନେ ଖାଆନ୍ତି, ସେହିପରି ଧନାଢ୍ୟ ଲୋକକୁ ସର୍ବତ୍ର ( ଧୂର୍ତ୍ତ ଚୋର ପ୍ରଭୃତି ) ସମସ୍ତେ ପ୍ରତାରଣା କରିଥାନ୍ତି । ୧୭୫ । ପୁନଶ୍ଚ—

ରାଜତଃ ସଲିଳାଦଗ୍ନେଶ୍ଚୋରତଃ ସ୍ୱଜନାଦପି
ଭୟମର୍ଥବତାଂ ନିତ୍ୟଂ ମୃତ୍ୟୋଃ ପ୍ରାଣଭୃତାମିବ । ୧୭୬ ।

ପ୍ରାଣୀମାନେ ଯେପରି ମୃତ୍ୟୁକୁ ଭୟ କରନ୍ତି, ସେହିପରି ଧନୀ ବ୍ୟକ୍ତିମାନେ ରାଜାଙ୍କୁ, ଜଳକୁ, ଅଗ୍ନିକୁ, ଚୋରକୁ ଏପରିକି ନିଜର ବନ୍ଧୁବାନ୍ଧବଙ୍କୁ ମଧ୍ୟ ଭୟ କରିଥାନ୍ତି । ୧୭୬ । ପୁଣି—

ଜନ୍ମନି କ୍ଳେଶବହୁଳେ କିନ୍ନୁ ଦୁଃଖମତଃ ପରମ୍
ଇଚ୍ଛାସମ୍ପଦ୍ ଯତୋନାସ୍ତି ଯଚ୍ଚେଚ୍ଛା ନ ନିବର୍ତ୍ତତେ । ୧୭୭ ।

କ୍ଳେଶମୟ ମାନବ ଜୀବନରେ ଇଚ୍ଛାନୁରୂପ ସମ୍ପତ୍ତି ମିଳେନାହିଁ, ପୁଣି ଇଚ୍ଛାର ନିବୃତ୍ତି ନାହିଁ । ଏହାଠାରୁ ବଳି କି ଦୁଃଖ ହୋଇପାରେ ? ୧୭୭ । ଭ୍ରାତଃ, ଆହୁରି ମଧ୍ୟ ଶୁଣ—

ଧନଂ ତାବଦସୁଲଭଂ ଲବ୍‌ଧଂ କୃଚ୍ଛ୍ରେଣ ପାଲ୍ୟତେ
ଲବ୍‌ଧନାଶୋ ଯଥା ମୃତ୍ୟୁସ୍ତସ୍ମାଦେତନ୍ନ ଚିନ୍ତୟେତ୍ । ୧୭୮ ।

ପ୍ରଥମତଃ ଧନ ଦୁର୍ଲଭ; ଅତି କଷ୍ଟରେ ଧନଲାଭ କରାଯାଏ । ଲାଭ କଲାପରେ ତାକୁ ସେହିପରି କଷ୍ଟରେ ରଖିବାକୁ ହୁଏ । ଧନନାଶ ମରଣ ତୁଲ୍ୟ ଦୁଃଖଦାୟକ । ତେଣୁ ଧନବିଷୟ ଚିନ୍ତା କରିବା ଉଚିତ ନୁହେଁ । ୧୭୮ ।

ଯା ତୃଷ୍ଣା ଚେତ୍ ପରିତ୍ୟକ୍ତା କୋ ଦରିଦ୍ରଃ କ ଈଶ୍ୱରଃ ।
ତସ୍ୟାଶ୍ଚେତ୍ ପ୍ରସରୋ ଦତ୍ତୋ ଦାସ୍ୟଞ୍ଚ ଶିରସି ସ୍ଥିତମ୍ । ୧୭୯

ଧନଲାଳସା ଦୂର ହୋଇପାରିଲେ ଧନୀ କିଏ, ଦରିଦ୍ର କିଏ ? ଅର୍ଥାତ୍ ଧନୀ ଓ ଦରିଦ୍ର ମଧ୍ୟରେ ପ୍ରଭେଦ ରହିନ୍ତା ନାହିଁ । ଧନଲୋଭକୁ ପ୍ରଶ୍ରୟ ଦେଲେ ଦାସତ୍ୱକୁ ମସ୍ତକରେ ସ୍ଥାନ ଦେବାକୁ ହେବ । ୧୭୯ ।

ଯଦ୍ ଯଦେବ ହି ବାଞ୍ଛିତ ତତୋ ବାଞ୍ଛା ପ୍ରବର୍ତ୍ତତେ
ପ୍ରାପ୍ତ ଏବାଽର୍ଥତଃ ସୋଽର୍ଥୋ ଯତୋ ବାଞ୍ଛା ନିବର୍ତ୍ତତେ । ୧୮୦ ।

ଯେଉଁ ଯେଉଁ ବସ୍ତୁକୁ ପାଇବା ପାଇଁ ଯେତେ ଇଚ୍ଛା କରିବ, ସେହି ସେହି ବସ୍ତୁ ପ୍ରତି ଇଚ୍ଛା ସେତିକି ବୃଦ୍ଧିପାଇବ । ଯହିଁରୁ ଇଚ୍ଛା ନିବୃତ୍ତ ହୁଏ, ସେହି ବସ୍ତୁହିଁ ପ୍ରକୃତରେ ମିଳିଲା ବୋଲି ବୁଝିବାକୁ ହେବ । ୧୮୦ ।

ଆଉ ଅଧିକ କଅଣ କହିବି ? ବିଶ୍ୱାସ 'ସହକାରେ ଆଳାପ କରି ମୋ ସହିତ କାଳ ଯାପନ କର । ଯେହେତୁ—

ଆମରଣାନ୍ତାଃ ପ୍ରଣୟାଃ କୋପାସ୍ତତ୍‌ କ୍ଷଣଭଙ୍ଗୁରାଃ
ପରିତ୍ୟାଗାଶ୍ଚ ନିଃସଙ୍ଗା ଭବନ୍ତି ହି ମହାତ୍ମନାମ୍‌ । ୧୮୧ ।

ମହାପୁରୁଷମାନଙ୍କର ପ୍ରଣୟ ମରଣପର୍ଯ୍ୟନ୍ତ ରହିଥାଏ; ସେମାନଙ୍କର କୋପ କ୍ଷଣସ୍ଥାୟୀ, ସେମାନଙ୍କର ଦାନ ପ୍ରଭୃତି କାର୍ଯ୍ୟ ଅନାସକ୍ତ ଅର୍ଥାତ୍‌ ସ୍ୱାର୍ଥରହିତ ।'' ୧୮୧ ।

ଏହା ଶୁଣି ଲଘୁପତନକ କହିଲା, ''ମନ୍ଥର, ତୁମେ ଧନ୍ୟ । ସର୍ବଥା ତୁମେ ଆଶ୍ରୟର ଯୋଗ୍ୟ । ଯେଣୁ—

ସନ୍ତ ଏବ ସତାଂ ନିତ୍ୟମାପଦୁଦ୍ଧରଣକ୍ଷମାଃ
ଗଜାନାଂ ପଙ୍କମଗ୍ନାନାଂ ଗଜା ଏବ ଧୁରନ୍ଧରାଃ । ୧୮୨ ।

ସତ୍‌ପୁରୁଷ ହିଁ ସର୍ବଦା ସାଧୁଲୋକମାନଙ୍କର ବିପଦ ଦୂର କରିବାକୁ ସମର୍ଥ ହୋଇଥାନ୍ତି । ପଙ୍କରେ ବୁଡ଼ିଯାଇଥିବା ହସ୍ତୀକୁ ଉଦ୍ଧାର କରିବାକୁ କେବଳ ହସ୍ତୀହିଁ ସମର୍ଥ; ଅନ୍ୟ କେହି ନୁହେଁ । ୧୮୨ । ପୁଣି—

ଶ୍ଲାଘ୍ୟଃ ସ ଏବ ଭୁବି ମାନବାନାଂ
ସ ଉତ୍ତମଃ ସତ୍ପୁରୁଷଃ ସ ଧନ୍ୟଃ,
ଯସ୍ୟାର୍ଥିନୋ ବା ଶରଣାଗତା ବା
ନାଶାବିଭଙ୍ଗା ବିମୁଖାଃ ପ୍ରୟାନ୍ତି । ୧୮୩ ।

ସଂସାରରେ ଯାହାଙ୍କ ପାଖରୁ ଯାଚକ ବା ଶରଣାଗତ ନିରାଶ ହୋଇ ଫେରି ଯାଆନ୍ତି ନାହିଁ, ସେହି ପୁରୁଷ ମାନବସମାଜରେ ଧନ୍ୟ, ପ୍ରଶଂସନୀୟ, ସତ୍‌ ଓ ଉତ୍ତମ ।'' ୧୮୩ ।

ଏହିପରି ସେମାନେ (କାକ, କୂର୍ମ, ମୂଷିକ) ଇଚ୍ଛା ଅନୁସାରେ ଆହାର ବିହାର କରି ସୁଖରେ ବାସ କରିବାକୁ ଲାଗିଲେ । ଦିନେ ଚିତ୍ରାଙ୍ଗ ନାମକ ମୃଗ ବ୍ୟାଧଠାରୁ ଭୟପାଇ ସେଠାକୁ ଆସି

ସେମାନଙ୍କ ନିକଟରେ ପହଞ୍ଚିଲା । ମୃଗର ପଛେ ପଛେ ଭୟର କାରଣସ୍ୱରୂପ ବ୍ୟାଧ ଆସୁଥିବାର ସମ୍ଭାବନା କରି ମନ୍ଥର ଜଳ ମଧ୍ୟରେ ପ୍ରବେଶ କଲା, ମୂଷିକ ଗର୍ତ୍ତଭିତରକୁ ପଶିଗଲା, କାକ ଉଡ଼ିଯାଇ ଗୋଟିଏ ବୃକ୍ଷର ଅଗ୍ରଭାଗରେ ବସିଲା । ଏହାପରେ ଲଘୁପତନକ ବହୁ ଦୂରକୁ ନିରୀକ୍ଷଣ କରି ଭୟର କୌଣସି କାରଣ ଦେଖିପାରିଲା ନାହିଁ । ତାହାର କଥାରେ ସମସ୍ତେ ଫେରିଆସି ପୁଣି ଏକତ୍ର ବସିଲେ । ମନ୍ଥର କହିଲା, "ଭଦ୍ର ମୃଗ, ତୁମର ସବୁ ମଙ୍ଗଳତ ? ଏଠାରେ ଇଚ୍ଛା ଅନୁସାରେ ପାନ ଓ ଭୋଜନ କର ଏବଂ ଏଠାରେ ଅବସ୍ଥାନ କରି ଏହି ବନକୁ ସାର୍ଥକ କର ।" ଚିତ୍ରାଙ୍ଗ କହିଲା, "ବ୍ୟାଧଠାରୁ ଭୟପାଇ ମୁଁ ତୁମମାନଙ୍କର ଶରଣ ନେଇଅଛି । ମୁଁ ତୁମମାନଙ୍କର ବନ୍ଧୁତା କାମନା କରେଁ । ଅନୁଗ୍ରହକରି ମୋତେ ବନ୍ଧୁରୂପେ ଗ୍ରହଣ କର । ଯେହେତୁ—

ଲୋଭାଦ୍‌ବାଽଥ ଭୟାଦ୍‌ବାପି ଯସ୍ତ୍ୟଜେଚ୍ଛରଣାଗତମ୍
ବ୍ରହ୍ମହତ୍ୟାସମଂ ତସ୍ୟ ପାପମାହୁର୍ମନୀଷିଣଃ । ୧୮୪ ।

ଲୋଭ ହେତୁରୁ ହେଉ ବା ଭୟ ହେତୁରୁ ହେଉ ଯେ ଶରଣାଗତ ପ୍ରାଣୀକୁ ତ୍ୟାଗକରେ, ତାହାର ବ୍ରହ୍ମହତ୍ୟାତୁଲ୍ୟ ପାପ ହୁଏ ବୋଲି ବିଦ୍ୱାନ୍ ଲୋକେ କହିଅଛନ୍ତି ।" ୧୮୪ ।

ହିରଣ୍ୟକ କହିଲା, "ଅନାୟାସରେ ଆମ ସହିତ ତୁମର ମିତ୍ରତା ହୋଇଗଲା । କାରଣ—

ଔରସଂ କୃତସମ୍ବନ୍ଧଂ ତଥା ବଂଶକ୍ରମାଗତମ୍
ରକ୍ଷକଂ ବ୍ୟସନେଭ୍ୟଶ୍ଚ ମିତ୍ରଂ ଜ୍ଞେୟଂ ଚତୁର୍ବିଧମ୍ । ୧୮୫ ।

ମିତ୍ର ଚାରି ପ୍ରକାର—ପ୍ରଥମତଃ ଔରସସମ୍ବନ୍ଧୀ ପୁତ୍ର ପୌତ୍ରାଦି, ଦ୍ୱିତୀୟତଃ ବିବାହାଦିସମ୍ବନ୍ଧୀ ଶ୍ୱଶୁର ଶାଳକ ପ୍ରଭୃତି, ତୃତୀୟତଃ

ବଂଶପରମ୍ପରାସମ୍ବନ୍ଧୀ ଦ୍ରବ୍ୟବେଶୀ ପ୍ରଭୃତି ଏବଂ ଚତୁର୍ଥତଃ ଆକସ୍ମିକ ବିପଦରୁ ରକ୍ଷାକାରୀ । ୧୮୫ ।

ତେଣୁ ତୁମେ ଏଠାରେ ନିଜ ଗୃହପରି ରହ ।'' ଏହା ଶୁଣି ମୃଗ ଆନନ୍ଦରେ ଇଚ୍ଛାନୁସାରେ ଖାଇପିଇ ଜଳସନ୍ନିହିତ ବଟବୃକ୍ଷର ଛାୟାରେ ବସିଲା । ତହୁଁ ମନ୍ଥର କହିଲା, "ସଖେ ମୃଗ, କାହାଠାରୁ ତୁମେ ଭୟ ପାଇଅଛ ? ଏହି ନିର୍ଜନ ବନକୁ କଅଣ କେବେ କେବେ ବ୍ୟାଧମାନେ ଆସିଥାନ୍ତି ?''

ମୃଗ କହିଲା, " କଳିଙ୍ଗ ରାଜ୍ୟରେ ରୁକ୍ମାଙ୍ଗଦ ବୋଲି ଜଣେ ରାଜା ଅଛନ୍ତି । ଦିଗ୍‌ବିଜୟ କରିବାକୁ ଆସି ସେ ଚନ୍ଦ୍ରଭାଗା ନଦୀ-ତୀରରେ ଶିବିର ସ୍ଥାପନ କରି ରହିଅଛନ୍ତି । କାଲି ସକାଳକୁ ସେ ଆସି କର୍ପୂରସର ନିକଟରେ ଉପସ୍ଥିତ ହେବେ । ବ୍ୟାଧମାନେ ଏହା କହୁଥିବାର ମୁଁ ଶୁଣିପାରିଛି । ତେଣୁ କାଲି ସକାଳକୁ ଏଠାରେ ରହିବା ବିପଦର କାରଣ । ବିଚାର କରି କଅଣ କରିବାକୁ ହେବ ତାହା ସ୍ଥିର କରିବା ଉଚିତ ।''

ଏହା ଶୁଣି ମନ୍ଥର ଭୀତ ହୋଇ କହିଲା, "ମିତ୍ର, ମୁଁ ଅନ୍ୟ କୌଣସି ଜଳାଶୟକୁ ଚାଲିଯିବା ଉଚିତ ।'' କାକ ଓ ମୃଗ କହିଲେ, "ମିତ୍ର, ତାହାହିଁ କରିଯାଉ । '' ହିରଣ୍ୟକ ବିରକ୍ତ ହୋଇ କହିଲା, "ଅନ୍ୟ ଜଳାଶୟକୁ ଯାଇପାରିଲେ ଅବଶ୍ୟ ମନ୍ଥରଙ୍କର ମଙ୍ଗଳ; କିନ୍ତୁ ସ୍ଥଳ ଉପରେ ଗଲେ ତାଙ୍କର କି ଅବସ୍ଥା ହେବ ? କାରଣ—

ଅମ୍ଭାଂସି ଜଳଜନ୍ତୂନାଂ ଦୁର୍ଗଂ ଦୁର୍ଗନିବାସିନାମ୍
ସ୍ୱଭୂମିଃ ଶ୍ୱାପଦାଦୀନାଂ ରାଜ୍ଞାଂ ସୈନ୍ୟଂ ପରଂ ବଳମ୍ । ୧୮୬ ।

ଜଳ ହେଉଛି ଜଳଚର ପ୍ରାଣୀମାନଙ୍କର ପ୍ରଧାନ ବଳ । ଦୁର୍ଗବାସୀମାନଙ୍କର ଦୁର୍ଗ ହେଉଛି ପ୍ରଧାନ ବଳ । ବ୍ୟାଘ୍ରାଦି

ଶ୍ୱାପଦମାନଙ୍କର ବଳ ହେଉଛି ପ୍ରଧାନ ବଳ ଏବଂ ରାଜାଙ୍କର ପ୍ରଧାନ ବଳ ହେଉଛି ସୈନ୍ୟସାମନ୍ତ । ୧୮୬ ।

ତେଣୁ ଉପାୟ ଖୋଜ ବାହାର କରିବାକୁ ହେବ । କଥିତ ଅଛି—

ଉପାୟେନ ହି ଯଚ୍ଛକ୍ୟଂ ନ ତଚ୍ଛକ୍ୟଂ ପରାକ୍ରମୈଃ
ଶୃଗାଳେନ ହତୋ ହସ୍ତୀ ଗଚ୍ଛତା ପଙ୍କବର୍ତ୍ମନା । ୧୮୭ ।

ବଳ ବା ପରାକ୍ରମଦ୍ୱାରା ଯାହା ସାଧିତ ହୋଇ ନ ପାରେ, କୌଶଳ ଦ୍ୱାରା ତାହା ସାଧିତ ହୋଇପାରେ । ଶୃଗାଳ ପଙ୍କପୂର୍ଣ୍ଣ ପଥରେ ଚାଲିଯିବା ଦ୍ୱାରା ହସ୍ତୀକୁ ମଧ୍ୟ ବଧ କରି ପାରିଥିଲା । ୧୮୭। ସେହି କଥାଟି କହୁଛି ।”

## କଥା-୭

ବ୍ରହ୍ମାରଣ୍ୟରେ କର୍ପୂରତିଳକ ନାମରେ ଗୋଟିଏ ହାତୀ ଥିଲା । ତାହାକୁ ଦେଖି ଶୃଗାଳମାନେ ବିଚାର କଲେ, ‘ଯଦି କୌଣସି ଉପାୟରେ ଏହି ହାତୀ ମରନ୍ତା, ତେବେ ଏହାର ମାଂସକୁ ଆମେମାନେ ଚାରିମାସ ପର୍ଯ୍ୟନ୍ତ ସ୍ୱଚ୍ଛନ୍ଦରେ ଖାଆନ୍ତେ ।’ ତହୁଁ ସେମାନଙ୍କ ଭିତରୁ ଗୋଟିଏ ବୃଦ୍ଧ ଶୃଗାଳ ପ୍ରତିଜ୍ଞା କରି କହିଲା, “ମୁଁ ମୋର ବୁଦ୍ଧି ବଳରେ ଏହାକୁ ମାରି ଦେବି ।”

ଏହାପରେ ସେହି ଶୃଗାଳ କର୍ପୂରତିଳକ ନିକଟକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା, “ଦେବ, ଅନୁଗ୍ରହ କରି ମୋ ଉପରେ ଦୃଷ୍ଟି ପକାନ୍ତୁ ।” ହସ୍ତୀ କହିଲା, “ତୁମେ କିଏ ? କେଉଁଠାରୁ ଆସିଲ ?” ଶୃଗାଳ ଉତ୍ତରକଲା, “ମୁଁ ଗୋଟିଏ ଶୃଗାଳ । ଏହି ବନରେ ବାସ କରୁଥିବା ସବୁ ଜୀବ ମିଳି ମୋତେ

ଆପଣଙ୍କ ନିକଟକୁ ପଠାଇଅଛନ୍ତି । କାରଣ ରାଜା ବିନା ରାଜ୍ୟ ଚଳି ନ ପାରେ । ରାଜପଦ ପାଇଁ ଯେଉଁ ସବୁ ଗୁଣ ଆବଶ୍ୟକ ସେସବୁ ଆପଣଙ୍କଠାରେ ଅଛି । ତେଣୁ ଏହି ବନରାଜ୍ୟରେ ରାଜ-ପଦରେ ଅଭିଷିକ୍ତ କରିବା ପାଇଁ ଆପଣଙ୍କୁ ସ୍ଥିର କରାଯାଇଅଛି । ଯେହେତୁ—

କୁଳାଚାରଜନାଽଚାରୈରତିଶୁଦ୍ଧପ୍ରତାପବାନ୍
ଧାର୍ମିକୋ ନୀତିକୁଶଳଃ ସ ସ୍ୱାମୀ ପୂଜ୍ୟତେ ଭୁବି । ୧୮୮ ।

ଯିଏ କୁଳାଚାର ତଥା ଲୋକାଚାରରେ ଅତି ଶୁଦ୍ଧ, ପ୍ରତାପଶାଳୀ, ଧାର୍ମିକ ଓ ନୀତିକୁଶଳ ଅଟେ, କେବଳ ସେହି ଲୋକ ଏ ପୃଥିବୀରେ ରାଜାରୂପେ ପୂଜା ପାଇବାର ଯୋଗ୍ୟ । ୧୮୮ । ପୁଣି—

ରାଜାନଂ ପ୍ରଥମଂ ବିନ୍ଦେତ୍
ତତୋ ଭାର୍ଯ୍ୟାଂ ତତୋ ଧନମ୍
ରାଜନ୍ୟସତି ଲୋକେଽସ୍ମିନ୍
କୁତୋଭାର୍ଯ୍ୟା କୁତୋ ଧନମ୍ । ୧୮୯ ।

ସର୍ବ ପ୍ରଥମେ ରାଜା ରହିବା ଉଚିତ । ତତ୍ପରେ ଭାର୍ଯ୍ୟା ଓ ତତ୍ପରେ ଧନ କାମନା କରିବାକୁ ହେବ । କାରଣ ରାଜା ନଥିଲେ ସଂସାରରେ ଭାର୍ଯ୍ୟା କାହୁଁ ରହିବ ବା ଧନ କାହୁଁ ରହିବ । ୧୮୯ । ପୁଣି—

ପର୍ଜନ୍ୟ ଇବ ଭୂତାନାମାଧାରଃ ପୃଥିବୀପତିଃ
ବିକଳେଽପି ହି ପର୍ଜନ୍ୟେ ଜୀବ୍ୟତେ ନ ତୁ ଭୂପତୌ । ୧୯୦ ।

ରାଜା ମେଘସଦୃଶ ସବୁ ପ୍ରାଣୀଙ୍କର ଜୀବନରକ୍ଷକ । ମେଘ ବୃଷ୍ଟି ନ କଲେ କଥଞ୍ଚିତ୍ ଜୀବନ ରକ୍ଷା କରାଯାଇପାରେ; କିନ୍ତୁ ରାଜାଙ୍କ ବିନା ଜୀବନରକ୍ଷା ଅସମ୍ଭବ । ୧୯୦ । ପୁଣି—

ନସ୍ୟୁତବହସ୍ୟୁବର୍ତ୍ତୀ ପ୍ରାୟଶୋ ଦଣ୍ଡଯୋଗା-
ଜ୍ଜଗତି ପରବଶେଽସ୍ମିନ୍ ଦୁର୍ଲଭଃ ସାଧୁବୃତ୍ତଃ
କୃଶମପି ବିକଳଂ ବା ବ୍ୟାଧିତଂ ବାଽଧନଂ ବା
ପତିମପି କୁଳନାରୀ ଦଣ୍ଡଭୀତ୍ୟାଽଭ୍ୟୁପୈତି । ୧୯୧ ।

ଏହି ସଂସାରରେ ଜନସାଧାରଣ ପ୍ରାୟଶଃ କାମ, ଲୋଭ ପ୍ରଭୃତି ଦୋଷର ଅଧୀନ ହେଲେହେଁ ରାଜଦଣ୍ଡ ଭୟରୁ ପ୍ରତ୍ୟେକ ଲୋକ ନିଜ ନିଜ ବିଷୟରେ ସନ୍ତୁଷ୍ଟ ରହିଥାନ୍ତି । ଏହି ଦଣ୍ଡ ଭୟରୁ କୁଳସ୍ତ୍ରୀ, କ୍ଷୀଣଶରୀର, ବିକଳାଙ୍ଗ, ବ୍ୟାଧିଗ୍ରସ୍ତ, ନିର୍ଦ୍ଧନ ସ୍ୱାମୀଙ୍କୁ ମଧ୍ୟ ସେବା କରିଥାଏ । ୧୯୧ ।

ତେଣୁ ପ୍ରଭୁ, ଶୀଘ୍ର ଆସିବା ହୁଅନ୍ତୁ, ଯେପରି ଅଭିଷେକ ଲଗ୍ନ ଗଡ଼ି ନ ଯାଏ ।”

ଏହା କହି ଶୃଗାଳ ଉଠି ଚାଲିଲା । ରାଜପଦ ଲୋଭରେ କର୍ପୂରତିଳକ ଶୃଗାଳ ଯେଉଁ ବାଟରେ ଯାଇଥିଲା ସେହି ବାଟରେ ଯାଉ ଯାଉ ଗଭୀର ପଙ୍କରେ ଲାଖିଗଲା । ହସ୍ତୀ କହିଲା, “ହେ ସଖେ ଶୃଗାଳ, ଏବେ କଅଣ କରିବାକୁ ହେବ ? ମୁଁ ଗଭୀର ପଙ୍କରେ ଲାଖି ଯାଇ ମୃତପ୍ରାୟ ହେଲିଣି । ଫେରି ପଡ଼ି ମୋତେ ଗୃହଁ ।”

ଶୃଗାଳ ହସି ହସି କହିଲା, “ପ୍ରଭୁ, ମୋର ଲାଙ୍ଗୁଳ ଅଗକୁ ଶୁଣ୍ଢରେ ଧରି ଉଠି ଆସନ୍ତୁ । ଏହା ହେଉଛି ମୋଭଳି ଶୃଗାଳର କଥାରେ ବିଶ୍ୱାସ କରିବାର ଫଳ । ଏବେ ଅନିବାର୍ଯ୍ୟ ଦୁଃଖ ଭୋଗ କର । କଥିତ ଅଛି—

ଯଦାଽସତ୍‌ସଙ୍ଗରହିତୋ ଭବିଷ୍ୟସି ଭବିଷ୍ୟସି
ଯଦାଽସଜ୍ଜନଗୋଷ୍ଠୀଷୁ ପତିଷ୍ୟସି ପତିଷ୍ୟସି । ୧୯୨ ।

ଯେତେକାଳ ପର୍ଯ୍ୟନ୍ତ ଅସତ୍ ଲୋକ ସଙ୍ଗରେ ସମ୍ବନ୍ଧ ରଖି ନ ଥିବ, ସେତେକାଳପାଏ ନିଶ୍ଚୟ ଜୀବନ ଧରି ରହିଥିବ । ଯେତେବେଳେ ଅସାଧୁ, ଧୂର୍ତ୍ତଗୋଷ୍ଠୀରେ ପଡ଼ିବ ସେତେବେଳେ ନିଶ୍ଚୟ ଅଧଃପତନ ହେବ । ୧୯୨ ।

ଏହାପରେ ମହାପଙ୍କରେ ପଡ଼ିଥିବା ସେହି ହସ୍ତୀକୁ ଶୃଗାଳମାନେ ଭକ୍ଷଣ କଲେ ।

ଏହି ହେତୁରୁ ମୁଁ କହୁଥିଲି ଯେ ବଳଦ୍ୱାରା ଯାହା ସାଧିତ ହୋଇ ନ ପାରେ, କୌଶଳଦ୍ୱାରା ତାହା ସାଧିତ ହୋଇପାରେ ।”

ତହୁଁ ମୃଗର ହିତବାକ୍ୟ ଗ୍ରହଣ କରି ଅତି ଭୟରେ କାତର ହୋଇ ମନ୍ଥର ଜଳାଶୟରୁ ବାହାରି ଚାଲିବାକୁ ଲାଗିଲା । ହିରଣ୍ୟକ ପ୍ରଭୃତି ବନ୍ଧୁମାନେ ସ୍ନେହବଶତଃ ଶଙ୍କାପୂର୍ଣ୍ଣ ହୃଦୟରେ ତାହାର ପଛେ ପଛେ ଚାଲିଲେ । ଏହି ସମୟରେ ବନ ମଧ୍ୟରେ ଗୋଟିଏ ବ୍ୟାଧ ଭ୍ରମଣ କରୁଥିଲା । ସେ ମନ୍ଥରକୁ ଦେଖିପାରି ତାକୁ ଧରିନେଇ ନିଜ ଧନୁରେ ବାନ୍ଧିଦେଇ କହିଲା, ‘ଆଜି ମୋର ବହୁ ଭାଗ୍ୟ ।’ ଭ୍ରମଣ କରି କରି କ୍ଷୁଧା ଓ ପିପାସାରେ ଆକୁଳ ହୋଇଥିବାରୁ ସେ ନିଜ ଗୃହ ଅଭିମୁଖରେ ଯିବାକୁ ଲାଗିଲା । ଏଣେ ମୃଗ, ବାୟସ ଓ ମୂଷିକ ନିତାନ୍ତ ଚିନ୍ତିତ ହୋଇ ସେହି ବ୍ୟାଧର ପଛେ ପଛେ ଚାଲିଲେ । ହିରଣ୍ୟକ ବିଳାପ କରି କହିଲା—

ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ
ଗଚ୍ଛାମ୍ୟହଂ ପାରମିବାର୍ଣ୍ଣବସ୍ୟ,
ତାବଦ୍ ଦ୍ୱିତୀୟଂ ସମୁପସ୍ଥିତଂ ମେ
ଛିଦ୍ରେଷ୍ୱନର୍ଥା ବହୁଳୀଭବନ୍ତି । ୧୯୩ ।

ସମୁଦ୍ରପାର ପଦ୍ମୁଣ ଗୋଟିଏ ଦୁଃଖ ନ ଯାଉଣୁ ଆଉ ଗୋଟିଏ ଦୁଃଖ ପଡ଼ଞ୍ଚ ଯାଉଛୁ । ଛିଦ୍ର (ଅବସର) ମିଳିଲେ ଅଶେଷ ଦୁଃଖ ଗୋଟିକ ପରେ ଗୋଟିଏ ଆସିଥାନ୍ତି । ୧୯୩ ।

ସ୍ୱଭାବଜଂ ତୁ ଯନ୍ମିତ୍ରଂ ଭାଗ୍ୟେନୈବାଭିଜାୟତେ
ତଦକୃତ୍ରିମ ସୌହାର୍ଦ୍ଦମାପତ୍ସ୍ୱପି ନ ମୁଞ୍ଚତି । ୧୯୪ ।

ଭାଗ୍ୟରେ ଥିଲେ ଅକୃତ୍ରିମ ମିତ୍ର ମିଳିଥାଏ; ଏଭଳି ମିତ୍ର ଘୋର ବିପତ୍ତିକାଳରେ ମଧ୍ୟ ମିତ୍ରତାକୁ ତ୍ୟାଗ କରେ ନାହିଁ । ୧୯୪ ।

ପୁଣି—

ନ ମାତରି ନ ଦାରେଷୁ ନ ସୋଦର୍ଯ୍ୟେ ନ ଚାତ୍ମଜେ
ବିଶ୍ୱାସସ୍ତାଦୃଶଃ ପୁଂସାଂ ଯାଦୃଙ୍ମିତ୍ରେ ସ୍ୱଭାବଜେ । ୧୯୫ ।

ମନୁଷ୍ୟର ଅକୃତ୍ରିମ ମିତ୍ରଠାରେ ଯେଉଁ ବିଶ୍ୱାସ ଥାଏ, ମାତା-ଠାରେ, ଭାର୍ଯ୍ୟାଠାରେ, ସହୋଦରଠାରେ ବା ପୁତ୍ରଠାରେ ମଧ୍ୟ ସେପରି ବିଶ୍ୱାସ ନ ଥାଏ । ୧୯୫ ।

ଏହିପରି ଚିନ୍ତା କରି କରି ହିରଣ୍ୟକ କହିଲା, "ହାୟ ! ମୋର କି ଦୁର୍ଭାଗ୍ୟ !

ସ୍ୱକର୍ମସନ୍ତାନବିଚେଷ୍ଟିତାନି
କାଲାନ୍ତରାବର୍ତ୍ତିଶୁଭାଶୁଭାନି,
ଇହୈବ ଦୃଷ୍ଟାନି ମୟୈବ ତାନି
ଜନ୍ମାନ୍ତରାଣୀବ ଦଶାନ୍ତରାଣି । ୧୯୬ ।

ଯେପରି ଜନ୍ମାନ୍ତରରେ ଶରୀରକୁ (ବାଲ୍ୟ ଯୌବନ ଜରାଆଦି) ବିଭିନ୍ନ ଅବସ୍ଥା ପରଜନ୍ମରେ ଭୋଗ କରିବାକୁ ହୁଏ, ସେହିପରି ଏ ଜନ୍ମରେ ମୋର ନିଜକୃତ କର୍ମମାନଙ୍କର ଶୁଭାଶୁଭ ଫଳ ମୁଁ ମଧ୍ୟ

ପରଜନ୍ମରେ ଭୋଗ କରିଥାନ୍ତି; କିନ୍ତୁ ଦୁର୍ଭାଗ୍ୟବଶତଃ ସେ ସବୁ ମୋତେ ଏହି ଜନ୍ମରେ ଭୋଗ କରିବାକୁ ହେଉଅଛି । ୧୯୬ ।
ଅଥବା ସବୁ ଏହିପରି—

କାୟଃ ସନ୍ନିହିତାପାୟଃ ସମ୍ପଦଃ ପଦମାପଦମ୍
ସମାଗମାଃ ସାପଗମାଃ ସର୍ବମୁତ୍ପାଦି ଭଙ୍ଗୁରମ୍ । ୧୯୭ ।

ଶରୀର ସ୍ୱଭାବତଃ ବିନାଶଶୀଳ; ସମ୍ପଦସକଳ ଆପଦର ସ୍ଥାନ । ମିତ୍ରାଦି ସହ ସମାଗମ ବିୟୋଗାନ୍ତକ । ଅତଏବ ଯାହାର ଉତ୍ପତ୍ତି ଅଛି, ତାହାର ନିଶ୍ଚୟ ବିନାଶ ଅଛି । ୧୯୭ ।

ପୁଣି ଟିକିଏ ଚିନ୍ତା କରି ସେ କହିଲେ—

ଶୋକାରାତିଭୟତ୍ରାଣଂ ପ୍ରୀତିବିଶ୍ରମ୍ଭଭାଜନମ୍
କେନ ରତ୍ନମିଦଂ ସୃଷ୍ଟଂ ମିତ୍ରମିତ୍ୟକ୍ଷରଦ୍ୱୟମ୍ । ୧୯୮ ।

ଶୋକ ଓ ଶତ୍ରୁଠାରୁ ରକ୍ଷାକାରୀ, ସ୍ନେହ ଓ ବିଶ୍ୱାସର ପାତ୍ର ହେଉଛି ମିତ୍ର । ଦୁଇ ଅକ୍ଷରବିଶିଷ୍ଟ 'ମିତ୍ର' ଶବ୍ଦରୂପକ ରତ୍ନଟିକୁ କିଏ ସୃଷ୍ଟି କଲା ? ୧୯୮ । ପୁଣି—

ମିତ୍ରଂ ପ୍ରୀତିରସାୟନଂ ନୟନୟୋରାନନ୍ଦନଂ ଚେତସଃ
ପାତ୍ରଂ ଯତ୍ସୁଖଦୁଃଖୟୋଃ ସମମିଦଂ ପୁଣ୍ୟାତ୍ମନା ଲଭ୍ୟତେ ।
ଯେ ଚାନ୍ୟେ ସୁହୃଦଃ ସମୃଦ୍ଧିସମୟେ ଦ୍ରବ୍ୟାଭିଳାଷାକୁଳା-
ସ୍ତେ ସର୍ବତ୍ର ମିଳନ୍ତି ତତ୍ତ୍ୱନିକଷଗ୍ରାବା ତୁ ତେଷାଂ ବିପତ୍ । ୧୯୯ ।

ମିତ୍ର ହେଉଛି ନେତ୍ରର ପ୍ରୀତି ନିମନ୍ତେ ଔଷଧ (ଅଞ୍ଜନ) ସ୍ୱରୂପ; ମିତ୍ର ହେଉଛି ଚିତ୍ତର ଆନନ୍ଦଦାତା ଓ ମିତ୍ର ହେଉଛି ସୁଖଦୁଃଖରେ ସମଭାଗୀ । ଏଭଳି ମିତ୍ର କେବଳ ପୁଣ୍ୟାତ୍ମା ପୁରୁଷଙ୍କୁ ମିଳିଥାଏ । ଯିଏ ସମୃଦ୍ଧିକାଳରେ ଧନଲାଭ ଆଶା କରିଥାଏ, ତାହାଭଳି ମିତ୍ର ସର୍ବତ୍ର ଅନାୟାସରେ ମିଳିବେ । ଏପରି ସ୍ୱାର୍ଥପରମାନଙ୍କ ମିତ୍ରତାର ପରୀକ୍ଷା ନିମନ୍ତେ ବିପଦ ହେଉଛି କଷଟି ପଥର । ୧୯୯ ।

ଏହିପରି ଅନେକ ବିଳାପ କରି ହିରଣ୍ୟକ ଚିତ୍ରାଙ୍ଗ ଓ ଲଘୁପତନକକୁ କହିଲା, "ଯେତେବେଳେ ଯାଏଏହି ବ୍ୟାଧ ବନ-ପ୍ରଦେଶ ଅତିକ୍ରମ କରି ଯାଇ ନାହିଁ, ସେ ପର୍ଯ୍ୟନ୍ତ ଆମେମାନେ ମନ୍ଥରଙ୍କୁ ଉଦ୍ଧାର କରିବାପାଇଁ ଚେଷ୍ଟା କରିବା ।" ସେ ଦୁହେଁ କହିଲେ, "ଯାହା କରିବାକୁ ହେବ ଶୀଘ୍ର କରିବା ଉଚିତ ।" ହିରଣ୍ୟକ କହିଲା, "ଚିତ୍ରାଙ୍ଗ ଜଳ ନିକଟକୁ ଯାଇ ନିଜକୁ ମଲାପରି ଦେଖାଇ ପଡ଼ିରହୁ । କାକ ତାହା ଉପରେ ବସି ଥଣ୍ଟରେ ଖୁମ୍ପି ଲା-ପରି କରୁ । ତାହାକୁ ଦେଖି ବ୍ୟାଧ ମାଂସ ଲୋଭରେ ମନ୍ଥରକୁ ତଳେ ରଖିଦେଇ ଚିତ୍ରାଙ୍ଗ ପାଖକୁ ଯିବ । ତହୁଁ ମୁଁ ଯାଇ ମନ୍ଥରର ବନ୍ଧନ କାଟି ଦେବି । ବ୍ୟାଧ ନିକଟକୁ ଆସିବାର ଦେଖିଲେ ତୁମ୍ଭେ ଦୁହେଁ ( ମୃଗ ଓ କାକ ) ପଳାଇଯିବ ।"

ତହୁଁ ଲଘୁପତନକ ଓ ଚିତ୍ରାଙ୍ଗ ଶୀଘ୍ରଯାଇ ସେହିପରି କଲେ । ପରିଶ୍ରାନ୍ତ ବ୍ୟାଧ ଜଳପାନ କରି ବୃକ୍ଷତଳେ ବସିଲା । ସେ ଦେଖିଲା ଯେ ମୃଗ ମରି ପଡ଼ିଛି । ତେଣୁ ସେ କଚ୍ଛପକୁ ପାଣିପାଖରେ ରଖି-ଦେଇ କଟୁରି ଧରି ଆନନ୍ଦରେ ମୃଗପାଖକୁ ଗଲା । ଏହି ଅବସରରେ ହିରଣ୍ୟକ ଆସି ମନ୍ଥରର ବନ୍ଧନକୁ କାଟିଦେଲା । କଚ୍ଛପ ମୁକ୍ତ ପାଇଲାମାତ୍ରେ ଜଳ ମଧ୍ୟରେ ପଶିଗଲା । ବ୍ୟାଧ ନିକଟ-ବର୍ତ୍ତୀ ହେବାର ଦେଖି ମୃଗ ଉଠି ବେଗରେ ଦୌଡ଼ି ପଳାଇଲା । ବ୍ୟାଧ ଗଛମୂଳକୁ ଫେରି ଆସି କଚ୍ଛପକୁ ଦେଖିବାକୁ ନ ପାଇ ଭାବିଲା—ନ ବୁଝି ନ ବିଚାରି କାମ କରିବାର ଉପଯୁକ୍ତ ଫଳ ପାଇଲି, ଯେହେତୁ—

ଯୋ ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବାଣି ନିଷେବତେ
ଧ୍ରୁବାଣି ତସ୍ୟ ନଶ୍ୟନ୍ତି ଅଧ୍ରୁବଂ ନଷ୍ଟମେବ ହି । ୨୦୦ ।

ଯେଉଁ ଲୋକ ନିଶ୍ଚିତ ବସ୍ତୁକୁ ତ୍ୟାଗ କରି ଅନିଶ୍ଚିତ ବସ୍ତୁକୁ ଆଶ୍ରୟ କରେ, ସେ ନିଶ୍ଚିତ ବସ୍ତୁକୁ ମଧ୍ୟ ହରାଏ । ଅନିଶ୍ଚିତ ବସ୍ତୁ ତ ସହଜେ ନଷ୍ଟ ହେବାର କଥା । ୨୦୦ ।

ଏହାପରେ ସେ ବ୍ୟାଧ ନିଜ କାର୍ଯ୍ୟଫଳରେ ନିରାଶ ହୋଇ ସ୍ୱସ୍ଥାନକୁ ପ୍ରସ୍ଥାନ କଲା । ମନ୍ଥର ପ୍ରଭୃତି ସମସ୍ତେ ବିପଦରୁ ଉଦ୍ଧାର ପାଇ ନିଜ ନିଜ ବାସସ୍ଥାନକୁ ଯାଇ ସୁଖରେ ବାସ କଲେ ।

ଅନନ୍ତର ରାଜପୁତ୍ରମାନେ ଆନନ୍ଦରେ କହିଲେ, "ଆମେମାନେ ସବୁ ଶୁଣି ଆନନ୍ଦିତ ହେଲୁ । ଆମର ଅଭିଳାଷ ପୂର୍ଣ୍ଣ ହୋଇଅଛି ।"

ବିଷ୍ଣୁଶର୍ମା କହିଲେ, "ଏହି ମିତ୍ରଲାଭ କଥାଟି ଶୁଣିବାକୁ ତୁମମାନଙ୍କର ଇଚ୍ଛାଥିଲା; ତାହା ଶୁଣିଲ । ଏହାଛଡ଼ା ମୁଁ ଆଶୀର୍ବାଦ କରୁଛି—

ମିତ୍ରଂ ଯାନ୍ତୁ ଚ ସଜ୍ଜନା ଜନପଦୈର୍ଲକ୍ଷ୍ମୀଃ ସମାଲଭ୍ୟତାଂ
ଭୂପାଳାଃ ପରିପାଳୟନ୍ତୁ ବସୁଧାଂ ଶଶ୍ୱତ୍ ସ୍ୱଧର୍ମେ ସ୍ଥିତାଃ ।
ଆସ୍ତାଂ ମାନସତୁଷ୍ଟୟେ ସୁକୃତିନାଂ ନୀତିର୍ନବୋଢ଼େବ ବଃ
କଲ୍ୟାଣଂ କୁରୁତାଂ ଜନସ୍ୟ ଭଗବାଂଶ୍ଚନ୍ଦ୍ରାର୍ଦ୍ଧଚୂଡ଼ାମଣି । ୨୦୧ ।

ସାଧୁଲୋକେ ମିତ୍ରସମାଗମ ଲାଭ କରନ୍ତୁ । ଦେଶବାସୀ ବିବିଧ ସମ୍ପଦ ଲାଭ କରନ୍ତୁ । ରାଜାମାନେ ସର୍ବଦା ସ୍ୱଧର୍ମରେ ରହି ପ୍ରଜାମାନଙ୍କୁ ପାଳନ୍ତୁ । ତୁମମାନଙ୍କର ନୀତିଶିକ୍ଷା ନବବିବାହିତା ତରୁଣୀ ସଦୃଶ ପଣ୍ଡିତମାନଙ୍କର ସନ୍ତୋଷ ବିଧାନ କରୁ । ଭଗବାନ୍ ଚନ୍ଦ୍ରଚୂଡ଼ ଶିବ ଲୋକମାନଙ୍କର ମଙ୍ଗଳ ସାଧନ କରନ୍ତୁ ।" ୨୦୧ ।

( ମିତ୍ରଲାଭ ସମ୍ପୂର୍ଣ୍ଣ )

———